ଓଡ଼ିଶାର ବିକାଶ

# ବିସ୍ଥାପନର ସ୍ଥିତି ଓ ଗତି




● ସୌରୀବନ୍ଧୁ କର

ଏଆଇଟିୟୁସି, ଓଡ଼ିଶା ରାଜ୍ୟ କମିଟି ଦ୍ୱାରା ପ୍ରକାଶିତ

# ଓଡ଼ିଶାର ବିକାଶ ବିସ୍ଥାପନର ସ୍ଥିତି ଓ ଗତି

୨୦୦୬ ମସିହାର ପ୍ରାରମ୍ଭ ଓଡ଼ିଶା ପାଇଁ ଏକ ଦୁର୍ଭାଗ୍ୟର ବର୍ଷ ଭାବେ ଆରମ୍ଭ ହେଲା ଯେତେବେଳେ ନୂଆ ବର୍ଷର ଅଭିନନ୍ଦନ ସମାପ୍ତ ହେବା ପୂର୍ବରୁ ଓଡ଼ିଶା ସରକାରଙ୍କର ଭ୍ରାନ୍ତ ନୀତିର ଶୀକାର ହେଲେ କଳିଙ୍ଗନଗର ଯାଜପୁରର ୧୨ଜଣ ଆଦିବାସୀ ଓ ହରିଜନ ଏବଂ ସେମାନଙ୍କୁ ପୁଲିସର ଗୁଳି ପେଟରେ ପ୍ରାଣ ଦେବାକୁ ହେଲା । ହଜାର ହଜାର ସଂଖ୍ୟାର ଆଦିବାସୀ ଟାଟା ଷ୍ଟିଲ କମ୍ପାନୀ ଆରମ୍ଭ କରୁଥିବା ପାଚେରୀକୁ ବିରୋଧ କରିବା ଫଳରେ ପୁଲିସ ଗୁଳି ଚଳାଇଲା । ଯଦି ସରକାର ମାଲିକ ସପକ୍ଷରେ ସକ୍ରିୟ ହୋଇ କାର୍ଯ୍ୟ କରିନଥାନ୍ତେ, ତେବେ ଏହି ଦୁଃଖଦ ଘଟଣାକୁ ଏଡାଯାଇ ପାରିଥାନ୍ତା । କଳିଙ୍ଗନଗର କେବଳ ନୁହେଁ ବରଂ ଏହା ପୂର୍ବରୁ ମାଇକଣ୍ଡ, ରାଇଗଡ, ମନ୍ଦ୍ରାବାଜୁରେ ପୁଲିସ ଗୁଳିରେ ନିରୀହ ଆଦିବାସୀ ପ୍ରାଣ ଦେଇଛନ୍ତି ।

ଉଦ୍ୟୋଗୀକରଣ ହେଲେ ଏକ ଉନ୍ନତ ଜୀବନ ପାଇଁ ମାର୍ଗ ପ୍ରଶସ୍ତ ହେବ କାରଣ ଏହା ଫଳରେ ରାଜ୍ୟର ବିକାଶ ହେବ ଏହି ଯୁକ୍ତି ବର୍ତ୍ତମାନ ଗ୍ରହଣୀୟ ହୋଇ ପାରୁନାହିଁ । ବିକାଶ କାହା ପାଇଁ ? ଏ ପ୍ରଶ୍ନ ସ୍ୱଭାବିକ ଭାବେ ଉଠୁଛି । ବିକାଶ ଲୋକମାନଙ୍କର ମଙ୍ଗଳ ପାଇଁ ହେବା ଦରକାର । ସେମାନେ ପୁରୁଷ ପୁରୁଷ ଧରି ବସବାସ କରୁଥିବା ଅଞ୍ଚଳରୁ ସେମାନଙ୍କୁ ବିସ୍ଥାପନ କରି ନୁହେଁ ଏହା ବର୍ତ୍ତମାନ କେବଳ ସମଗ୍ର ରାଜ୍ୟ ନୁହେଁ ସମଗ୍ର ଦେଶରେ ଚର୍ଚ୍ଚାର ବିଷୟ ହୋଇଛି ।

ସେହି ପରିପ୍ରେକ୍ଷୀରେ ବିକାଶ ଓ ବିସ୍ଥାପନ ସମ୍ପର୍କରେ ଅଲୋଚନା କରିବା ଆବଶ୍ୟକ । ଓଡ଼ିଶାର ବିକାଶ ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ପ୍ରଥମେ ଦେଖିବାକୁ ହେବ ସର୍ବଭାରତୀୟ ସ୍ତରରେ ଓଡ଼ିଶାର ସ୍ଥିତି କେଉଁଠି ?

## ଓଡ଼ିଶାର ସ୍ଥିତି କ'ଣ ?

ଓଡ଼ିଶାରେ ୪୭% ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ବାସକରନ୍ତି । ଯଦି ଓଡ଼ିଶାର ଭୌଗୋଳିକ ସୀମାକୁ ଉପକୂଳବର୍ତ୍ତୀ ଅଞ୍ଚଳ, ଉତ୍ତରାଞ୍ଚଳ ଓ ଦକ୍ଷିଣାଞ୍ଚଳ ଏହି ତିନି ଭାଗରେ ବିଭକ୍ତ କରିଦେଖିବା ତେବେ ଦାରିଦ୍ର୍ୟର ସୀମାରେଖା ତଳେ ଥିବା ଲେକାସଂଖ୍ୟା ଯଥାକ୍ରମେ ୩୨% ଉପକୂଳବର୍ତ୍ତୀ ଅଞ୍ଚଳରେ ହେବାବେଳେ ଉତ୍ତରାଞ୍ଚଳରେ ୫୦% ଓ ଦକ୍ଷିଣାଞ୍ଚଳରେ ୮୭% । ଓଡ଼ିଶା ଭିତରେ ଥିବା ଏହି ଆଞ୍ଚଳିକ ତାରତମ୍ୟ ଦ୍ରୁତଗତିରେ ବଢି ଚାଲିଛି । ଯଦି ଆମେ ସାକ୍ଷରତା ହାର ଦେଖିବା, ତେବେ ୨୦୦୧ ମସିହା ଜନଗଣନା ଅନୁସାରେ ଓଡ଼ିଶାର ସାକ୍ଷରତା ହାର ୬୪ ପ୍ରତିଶତ ଥିବାବେଳେ ଦକ୍ଷିଣାଞ୍ଚଳରେ ଏହା ୩୦ରୁ ୩୫ ପ୍ରତିଶତ ଏବଂ ମହିଳା

ସାକ୍ଷରତା ୨୫ ପ୍ରତିଶତ ଏବଂ କୋରାପୁଟ ଜିଲ୍ଲାରେ ମାତ୍ର ୨୩ ପ୍ରତିଶତ । ଏଥି ସହିତ ନିମ୍ନସ୍ଥ ଟେବୁଲର ୧ ଓ ୨ରୁ ଓଡ଼ିଶାର ବିକାଶ କ୍ଷେତ୍ରରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ଦାରିଦ୍ର୍ୟର ଆନୁପାତିକ ପ୍ରତିଶତ ସୂଚୀତ ହୋଇଛି ଏବଂ ଏଥିରୁ ସ୍ପଷ୍ଟ ଦେଖାଯାଏ ଯେ ଆର୍ଥିକ, ଶିକ୍ଷା ଓ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଓଡ଼ିଶା ମଧ୍ୟରେ ବ୍ୟାପକ ଆଞ୍ଚଳିକ ତାରତମ୍ୟ ରହିଥିବା ବେଳେ ସର୍ବଭାରତୀୟ କ୍ଷେତ୍ରରେ ଓଡ଼ିଶା ସବୁଠାରୁ ପଛରେ ରହିଛି ।

**Table 1:Human Development in Orissa's Districts**

| | Literacy 1991 | | | Literacy 2001 | | | Health | | |
|---|---|---|---|---|---|---|---|---|---|
| | Persons | Males | Females | Persons | Males | Females | % women receiving skilled attention during pregnancy | IMR | % childredn completely immunised |
| Orissa | 49.09 | 63.09 | 34.68 | 63.61 | 75.95 | 50.97 | | | |
| Bargarh | 47.65 | 63.78 | 31.21 | 64.13 | 77.93 | 50.03 | 47 | 93 | 63.9 |
| Jharsuguda | 52.73 | 67.29 | 37.11 | 71.47 | 83.04 | 59.23 | 59.8 | 93 | 79.8 |
| Sambalpur | 51.52 | 65.90 | 36.43 | 67.01 | 78.87 | 54.79 | 42.4 | 93 | 76.5 |
| Debagarh | 44.45 | 59.43 | 29.26 | 60.76 | 73.79 | 47.56 | 27.2 | 93 | 53.1 |
| Sundargarh | 52.97 | 65.41 | 39.60 | 65.22 | 75.69 | 54.25 | 48.9 | 93 | 80.2 |
| Keondujhar | 44.73 | 59.04 | 30.01 | 59.75 | 72.53 | 46.71 | 27.2 | 93 | 46.8 |
| Mayurbhanj | 37.88 | 51.84 | 23.68 | 52.43 | 66.38 | 38.28 | 27.1 | 93 | 55.1 |
| Baleshwar | 57.64 | 71.23 | 43.40 | 70.94 | 81.75 | 59.57 | 25.3 | 92 | 51 |
| Bhadrak | 60.54 | 74.62 | 46.35 | 74.64 | 86.44 | 63.62 | 30.3 | 92 | 54 |
| Kendrapara | 63.61 | 76.62 | 50.57 | 77.33 | 87.62 | 67.29 | 39.8 | 92 | 53.8 |
| Jagatsinghapur | 65.77 | 78.27 | 53.05 | 79.61 | 88.96 | 69.94 | 50.4 | 92 | 58.6 |
| Cuttack | 65.46 | 77.41 | 52.44 | 76.13 | 85.46 | 66.19 | 46.7 | 92 | 70.8 |
| Jajpur | 58.00 | 70.50 | 45.29 | 72.19 | 82.69 | 61.45 | 38.6 | 92 | 56.5 |
| Dhenkanal | 54.91 | 68.80 | 40.33 | 70.11 | 81.31 | 58.55 | 36.7 | 93 | 71.5 |
| Anugul | 51.53 | 67.66 | 34.32 | 69.40 | 82.02 | 56.01 | 22.7 | 93 | 70.9 |
| Nayagarh | 57.20 | 73.00 | 40.74 | 71.02 | 83.23 | 58.10 | 41.2 | 92 | 63.6 |
| Khordha | 67.72 | 78.74 | 55.39 | 80.19 | 86.38 | 71.06 | 65.9 | 92 | 62.8 |
| Puri | 63.30 | 76.83 | 49.41 | 78.40 | 88.73 | 67.80 | 54.6 | 92 | 60.5 |
| Ganjam | 46.72 | 63.66 | 29.87 | 62.94 | 76.39 | 47.70 | 35.3 | 92 | 37.5 |
| Gajapati | 29.37 | 41.76 | 17.44 | 41.73 | 55.14 | 28.91 | 24.7 | 92 | 62 |
| Kandhamal | 37.23 | 54.68 | 19.62 | 52.95 | 69.98 | 36.19 | 21 | 125 | 67.7 |
| Baudh | 40.98 | 60.61 | 21.01 | 58.43 | 76.86 | 39.78 | 21 | 93 | 50.7 |
| Sonapur | 42.62 | 61.46 | 23.38 | 64.07 | 80.30 | 47.28 | 40.6 | 93 | 66.8 |
| Balangir | 38.63 | 55.64 | 21.30 | 54.93 | 70.36 | 39.27 | 36.7 | 125 | 72.4 |
| Nuapada | 27.52 | 42.31 | 12.78 | 42.29 | 58.76 | 26.01 | 21 | 125 | 52.4 |
| Kalahandi | 31.08 | 46.85 | 15.28 | 46.20 | 62.88 | 29.56 | 23.4 | 126 | 55.7 |
| Rayagada | 26.01 | 36.53 | 15.63 | 35.61 | 47.35 | 24.31 | 28.6 | 125 | 55.2 |
| Nabarangapur | 18.62 | 26.10 | 9.01 | 34.26 | 47.37 | 21.02 | 18.1 | 125 | 28.1 |
| Koraput | 24.64 | 33.98 | 15.15 | 36.20 | 47.58 | 24.81 | 20.4 | 125 | 55.5 |
| Malkangiri | 20.04 | 26.24 | 11.69 | 31.26 | 41.21 | 21.26 | 10.7 | 125 | 50.2 |

**Table 2:Poverty Ratios by Social Group, Orissa and India, 1983 to 1999-2000**

| Social Group | 1983 | 1987-88 | 93-94 | 99-2000 | 1983 | 87-88 | 93-94 | 99-2000 | 1983 | 87-88 | 93-94 | 99-2000 |
|---|---|---|---|---|---|---|---|---|---|---|---|---|
| Orissa | | | | | | | | | | | | |
| ST | 87.06 | 83.62 | 71.31 | 73.08 | 73.73 | 61.37 | 62.81 | 59.38 | 86.22 | 82.34 | 70.76 | 72.08 |
| SC | 75.99 | 65.75 | 49.79 | 52.30 | 69.53 | 59.52 | 45.46 | 72.03 | 75.38 | 65.35 | 49.39 | 55.08 |
| Other | 58.52 | 47.31 | 40.16 | 33.29 | 41.86 | 37.87 | 36.32 | 34.18 | 56.16 | 45.92 | 39.55 | 33.48 |
| All | 68.43 | 58.62 | 49.79 | 48.04 | 49.66 | 42.58 | 40.68 | 43.59 | 66.24 | 56.75 | 48.63 | 47.31 |
| All India | | | | | | | | | | | | |
| ST | 63.89 | 56.31 | 47.05 | 44.35 | 55.30 | 52.26 | 35.67 | 37.42 | 63.27 | 55.93 | 46.29 | 43.63 |
| SC | 58.96 | 50.79 | 48.27 | 35.44 | 56.12 | 54.65 | 49.08 | 39.13 | 58.50 | 51.38 | 48.42 | 36.14 |
| Other | 40.90 | 33.80 | 31.20 | 21.14 | 39.94 | 36.44 | 28.67 | 20.78 | 40.66 | 34.48 | 30.46 | 21.04 |
| All | 46.51 | 39.36 | 37.28 | 26.50 | 42.32 | 39.16 | 31.70 | 23.98 | 45.57 | 39.31 | 35.95 | 25.87 |

ଓଡ଼ିଶାର ଦାରିଦ୍ର୍ୟ ହେବାର ମୁଖ୍ୟ କାରଣ ହେଉଛି ଏହାର ଆର୍ଥିକ ବିକାଶ ହେଉନାହିଁ । ଆର୍ଥିକ ବିକାଶ ପାଇଁ ଆବଶ୍ୟକ ହେଉଥିବା କୃଷି କ୍ଷେତ୍ରର ବିକାଶ ୨ ପ୍ରତିଶତରୁ କମ୍ ହେବା ବେଳେ ଉଦ୍ୟୋଗିକ ବିକାଶ ଏହାଠାରୁ ମଧ୍ୟ କମ୍ । ଏହା ସତ୍ତ୍ୱେ କୃଷି ଓ ଉଦ୍ୟୋଗିକ ବିକାଶ ପାଇଁ ଲୋକମାନଙ୍କୁ ବାସଚ୍ୟୁତ କରାଯାଉଛି । ଏବଂ ଯେଉଁମାନେ ବାସଚ୍ୟୁତ ହେଉଛନ୍ତି ସେମାନେ ବିଶେଷ ଭାବେ ଆଦିବାସୀ ଏବଂ ଆର୍ଥିକ ଦୃଷ୍ଟିରୁ ସବୁଠାରୁ ତଳେ ରହି ଜୀବନ ନିର୍ବାହ କରୁଛନ୍ତି । ଓଡ଼ିଶାରେ ପ୍ରଭୂତ ଓ ପର୍ଯ୍ୟାପ୍ତ ପରିମାଣର ଖଣି ଓ ଖଣିଜ ସମ୍ପଦ ରହିଛି । ଭାରତରେ ଯେତେ ପରିମାଣର ଖଣିଜ ପଦାର୍ଥ ରହିଛି ତାର ୯୯ ପ୍ରତିଶତ କ୍ରୋମାଇଟ, ୯୨ ପ୍ରତିଶତ ନିକେଲ, ୬୫ ପ୍ରତିଶତ ଗ୍ରାଫାଇଟ୍ ଓ ପ୍ୟାରୋଫାଇଟ୍, ୬୬ ପ୍ରତିଶତ ବକ୍ସାଇଟ୍, ୩୧ ପ୍ରତିଶତ ଖଣିଜ ବାଲି, ୩୨ ପ୍ରତିଶତ ମାଙ୍ଗାନିଜ, ୨୮ ପ୍ରତିଶତ ଲୁହାପଥର ଓ ୨୪ ପ୍ରତିଶତ କୋଇଲା । ତଥାପି ଓଡ଼ିଶା ଦାରିଦ୍ର୍ୟ ଏବଂ ଖଣିଜ ସମ୍ପଦକୁ ଲୁଟ୍ କରିବା ପାଇଁ କାରଖାନା ମାଲିକମାନେ ରାଜ୍ୟ ସରକାରଙ୍କ ସହିତ ବେଶ୍ ମଧୁଚନ୍ଦ୍ରିକାରେ ଲିପ୍ତ ।

ଓଡ଼ିଶାରେ ଶିଳ୍ପାୟନ ଓ ବଡବଡ ଡ୍ୟାମ୍ ଆରମ୍ଭ ହେବାଦିନ ଠାରୁ ଆଦିବାସୀମାନେ ଶୋଷଣ ଓ ଉତ୍ପୀଡନର ଶୀକାର ହେବାରେ ଲାଗିଛନ୍ତି ।

## (୧) ଇସ୍ପାତ କାରଖାନା

୧୯୫୦ ମସିହାରେ ରାଉରକେଲା ଇସ୍ପାତ କାରଖାନା ହେବାର ନିଷ୍ପତ୍ତି ହେବା ପରେ ୧୯୫୪ ମସିହାରେ ରାଜ୍ୟ ସରକାର ଜମି ଅଧିଗ୍ରହଣ କଲେ । ଷ୍ଟିଲ ଅଥରିଟି ଅଫ୍ ଇଣ୍ଡିଆ ରାଉରକେଲା ଇସ୍ପାତ କାରଖାନା ପାଇଁ ୩୫୦୦୦ ଏକର ଜମି ଓ ମନ୍ଦିରା ଡ୍ୟାମ୍ ପାଇଁ ୧୨୦୦୦ ଏକ ଜମି ଅଧିଗ୍ରହଣ କଲେ । ୧୯୫୪ ମସିହାରେ ରାଜ୍ୟସରକାର ୩୩ଟି ଗ୍ରାମର ୨୫୦୩୫.୩୪ ଏକର ଜମି ଓ ୩୧ଟି ଗ୍ରାମର ୧୧୯୨୩.୯୮ ଏକର ଜମି ଅଧିଗ୍ରହଣ ଅର୍ଥାତ୍ ୩୬୯୫୯.୧୨ ଏକର ଉଭୟ ରାଉରକେଲା ଇସ୍ପାତ କାରଖାନା ଓ ମନ୍ଦିରା ଡ୍ୟାମ ପାଇଁ ଗ୍ରହଣ କରିବା ଫଳରେ ୪୨୫୮ ପରିବାର ବାସଚ୍ୟୁତ ହେଲେ । ଗତ ୫୦ବର୍ଷ ମଧ୍ୟରେ ଏ ସମସ୍ତଙ୍କର ଥଇଥାନ ହୋଇ ପାରିନାହିଁ । ୧୦୯୮ଟି ପରିବାର ଏପର୍ଯ୍ୟନ୍ତ ରାଉରକେଲା ଇସ୍ପାତ କାରଖାନାରେ କାମ ପାଇନାହାନ୍ତି ।

## (୨) ହୀରାକୁଦ ଡ୍ୟାମ

୧୯୫୦ ମସିହାରେ ସମ୍ବଲପୁରର ହୀରାକୁଦ ଠାରେ ମହାନଦୀ ଉପରେ ନଦୀବନ୍ଧ କରାଯିବାର ସ୍ଥିର କରାଯିବା ପରେସେଠାରୁ ୨୧୧୪୧ ପରିବାର ବାସଚ୍ୟୁତ ହେଲେ । ହୀରାକୁଦ ନଦୀବନ୍ଧ ଯୋଜନା ୧୯୪୫ ମସିହାରେ ଆରମ୍ଭ କରାଯାଇ ୧୯୫୭ ମସିହାରେ ଶେଷ ହେଲା । ଏହି ନଦୀବନ୍ଧ ଯୋଜନାର ମୁଖ୍ୟ ଲକ୍ଷ୍ୟ ଥିଲା କୃଷି କାର୍ଯ୍ୟର ସଫଳତା, ଉତ୍ପାଦନ ବୃଦ୍ଧି, କୃଷିହାନୀ ଘଟିଲେ ନିରାପତ୍ତା ଇତ୍ୟାଦି । ଏହି

ନଦୀବନ୍ଧ ହେବା ଫଳରେ ୭୪୩୦୦ ହେକ୍ଟର ଜମି ମଧ୍ୟରୁ ୨୩,୯୮୮ ହେକ୍ଟର ଜଙ୍ଗଲ ଜମି ଓ ୪୯୮୮ ହେକ୍ଟର କୃଷି ଜମି ନଦୀବନ୍ଧ ପାଣିରେ ବୁଡିଗଲା ଓ ଏହା ଦ୍ୱାରା ୨୮୫ଟି ଗ୍ରାମରୁ ଓଡ଼ିଶାର ୨୪୯ଟି ଗ୍ରାମ (୧୦୮ଟି ପୂରା ଗ୍ରାମ ୧୪୧ଟି ଅଧା ଗ୍ରାମ) ଆଛନ୍ନ ହେଲେ ଏହା ଫଳରେ ୨୧୪୧ ପରିବାରର ୧,୧୦,୦୦୦ ଲୋକ ବାସଚ୍ୟୁତ ହେଲେ । ୪୭୪୪ଟି ଆଦିବାସୀ ଓ ହରିଜନ ପରିବାରଙ୍କୁ ପୁଲିସ ସାହାଯ୍ୟରେ ଜୋର ଜବରଦସ୍ତ ସେମାନଙ୍କ ଭିଟାମାଟିରୁ ଉଚ୍ଛେଦ କରାଗଲା । ମାତ୍ର ୨୧୮୫ଟି ପରିବାରଙ୍କୁ ୧୭ଟି ପୁନଃବସତି କ୍ୟାମ୍ପରେ ପୁନର୍ବାସ କରାଗଲା ଓ ଏଥିପାଇଁ ୩୧୩୪.୭୧ ଏକର ଘରୋଇ ଜମି ଓ ୨୨୧.୯୦ ଏକର ଜଙ୍ଗଲ ଜମି ବିସ୍ଥାପିତ ଲୋକଙ୍କ ଥଇଥାନ ପାଇଁ ଅଧିଗ୍ରହଣ କରାଗଲା । ଏହାବାଦ ବିସ୍ଥାପିତ ଲୋକଙ୍କୁ ଦେବାକୁ ଥିବା ଟ୧୫,୪୧,୪୬, ୯୯୪.୦୦ (୧୫କୋଟି ୪୧ ଲକ୍ଷ ୪୬ହଜାର ୯୯୪କୋଟିଟଙ୍କା)ର ଅନୁକମ୍ପା ରାଶି ସେମାନଙ୍କୁ ଏ ଅବଧି ଦିଆଯାଇନାହିଁ ।

(୩) ନାଲକୋ - ନ୍ୟାସନାଲ ଆଲୁମିନିୟମ୍ କମ୍ପାନୀ ସମୁଦାୟ ୧୦୦୫୮ ଏକର ଜମି ଅଧିଗ୍ରହଣ କରିଥିଲେ । ଏହା ମଧ୍ୟରୁ ୨୪୨୭.୩୦ ଏକର ବକ୍ସାଇଟ୍ ଖଣି, ୨୬୩୮.୯୬ ଏକର ଟାଉନ୍ ଗଠନ ପାଇଁ ଓ ୬୯୯୨.୫୦ ଏକର ଆଲୁମିନିୟମ ପ୍ଲାଟ ବସାଇବା ପାଇଁ । କୋରାପୁଟ ଜିଲ୍ଲା ନାଲକୋ ଚମ୍ପାପଦର ଗ୍ରାମର ବାସଚ୍ୟୁତ ୫୯ଟି ପରିବାରଙ୍କୁ ଓ କୋରାଗତର ୧୬ଟି ପରିବାରଙ୍କୁ ୧୯୮୨ ମସିହାରେ ଅନୁକମ୍ପା ରାଶି ପ୍ରଦାନ କରିଥିଲେ । କିନ୍ତୁ ଡିସେମ୍ବର ୨୩,୨୦୦୩ ମସିହାରେ ଯେତେବେଳେ ବଳପୂର୍ବକ ଏମାନଙ୍କୁ ସହିଦ ଲକ୍ଷ୍ମଣ ନାଏକ ନଗର କଲୋନୀକୁ ସ୍ଥାନନ୍ତର କରାଗଲା ସେତେବେଳେ ଯେଉଁ ୪୨ ପରିବାର ବାସଚ୍ୟୁତ ହେଲେ ସେମାନଙ୍କର ୨୧ବର୍ଷ ତଳେ ହୋଇଥିବା ବାସଚ୍ୟୁତ ତାଲିକାରେ ନାଁ ନଥିଲା । ସେମାନଙ୍କୁ କୌଣସି ପୁନର୍ବାସ ଓ ଥଇଥାନ ରାଶି ଦିଆଯାଇନାହିଁ ।

(୪) ୧୯୬୩ ମସିହାରେ କୋରାପୁଟର ଆଦିବାସୀ ଅଧୁଷିତ ସୁନାବେଡା ଠାରେ ପ୍ରତିରକ୍ଷା ଯନ୍ତ୍ରପାତି ନିର୍ମାଣ ପାଇଁ ହିନ୍ଦୁସ୍ଥାନ ଏରୋନଟିକ ଲିମିଟେଡ୍ ନିର୍ମିତ ହେଲା । ଏଥିପାଇଁ ହାଲ (HAL) ୯୩୦୧ ଏକର ଜମି ଅଧିଗ୍ରହଣ କଲେ ଓ ଏଥିପାଇଁ ୧୦ଟି ଗ୍ରାମର ୪୬୮ଟି ପରିବାର ବାସଚ୍ୟୁତ ହେଲେ । ହାଲ (HAL) ଜମି ଅଧିଗ୍ରହଣ କରି ୫ଗୋଟି ୟୁନିଟ୍ ସ୍ଥାପନ କରିବା ପାଇଁ ସ୍ଥିର କରିଥିଲେ ହେଁ ମାତ୍ର ଗୋଟିଏ ୟୁନିଟ୍ ସ୍ଥାପନ କଲେ । ବଳକା ଜମିକୁ ବାସଚ୍ୟୁତ ଲୋକମାନଙ୍କୁ ଫେରସ୍ତ ନ ଦିଆଯାଇ ଘରୋଇ ସଂସ୍ଥା ମାନଙ୍କୁ ଅଧିକା ଦରରେ ବିକ୍ରୀ କରାଗଲା ।

(୫) କାଶୀପୁରଠାରେ ନିର୍ମିତ ହୋଇଥିବା ଉତ୍କଳ ଆଲୁମିନା ଇଣ୍ଟନ୍ୟାସନାଲ ଲିମିଟେଡ୍ (ୟୁଏଆଇଏଲ) ଏକ ଯୁଗ୍ମ ଉଦ୍ୟୋଗ ଭାରତର ହିଣ୍ଡାଲକୋ(୫୫% ଅଂଶଧନ) ଓ କାନାଡା ଦେଶର ଆଲକାନ୍(୪୫% ଅଂଶଧନ) ରହିଛନ୍ତି । ଏହି ପ୍ରକଳ୍ପ

ମାଧମରେ ୟୁଏଆଇଏଲ ସମୁଦାୟ ୪୫୦୦କୋଟି ଟଙ୍କା ପୁଞ୍ଜି ଖଟାଇ ମାଇକଞ୍ଚ ନିକଟସ୍ଥ ବାଙ୍ଗଲାମାଳୀରେ ଥିବା ୧୯୫ ନିୟୁତ ଟନ୍ ବକ୍ସାଇଟ୍ ଉତ୍ତୋଳନ କରି କୁଚେଇ ପଦର ନିକଟସ୍ଥ ଆଲୁମିନା ପ୍ଲାଣ୍ଟରେ ଏହାକୁ ଆଲୁମିନାରେ ରୂପାନ୍ତରିତ କରି ଶହେ ପ୍ରତିଶତ ଆଲୁମିନା ରପ୍ତାନୀ କରିବ । ପ୍ରକଳ୍ପ ରିପୋର୍ଟ ଅନୁସାରେ ୧୪୦୦ ପ୍ରଯୁକ୍ତି ବିଦ୍ୟାଯୁକ୍ତ ନିଯୁକ୍ତି ହେବାବେଳେ ଅଣପ୍ରଯୁକ୍ତି ବିଦ୍ୟା ଯୁକ୍ତ ନିଯୁକ୍ତି ମାତ୍ର ୪୦୦ । ବିସ୍ଥାପିତ ହେବେ କେନ୍ଦୁଖଣ୍ଟି, ରାମିବେଡା ଓ ଡଲକରୋଇ ଗ୍ରାମର ପ୍ରାୟ ୧୪୭ ପରିବାର । ୨୦୦୧ ଜନଗଣନାକୁ ହିସାବକୁ ନିଆଯାଇନାହିଁ । କମ୍ପାନୀ ପ୍ରକଳ୍ପ ଦ୍ୱାରା ଜମି ହରାଇଥିବା ବାକି ୨୪ଖଣ୍ଡ ଗ୍ରାମର ଲୋକଙ୍କୁ ନିଯୁକ୍ତିର କୌଣସି ସୁବିଧା ନାହିଁ । ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ୮୨ଖଣ୍ଡ ଗ୍ରାମର ୨୨୦୦୦ ଲୋକ ପ୍ରଭାବିତ ହେବେ । ସେହିପରି ଲାଞ୍ଜିଗଡ ଠାରେ ବେଦାନ୍ତ କମ୍ପାନୀର ପ୍ରକଳ୍ପ ରିପୋର୍ଟ ଅନୁସାରେ ମାତ୍ର ୭୫୦ ଲୋକଙ୍କୁ ନିଯୁକ୍ତି ମିଳିବ । ଅଥଚ ନିୟମଗିରି ପାହାଡ, ନାଗାବଳୀ ଓ ବଂଶଧାରା ନଦୀ ଉପରେ ଜୀବନ ନିର୍ବାହ କରୁଥିବା ପ୍ରାୟ ଲକ୍ଷାଧିକ ଲୋକ କ୍ଷତିଗ୍ରସ୍ତ ହେବେ । ଏହା ବିରୁଦ୍ଧରେ ହେଉଥିବା ଆନ୍ଦୋଳନକୁ ଦମନ କରିବା ପାଇଁ ଡିସେମ୍ବର ୧୬,୨୦୦୦ର ମାଇକଞ୍ଚ ଗୁଳିକାଣ୍ଡରେ ୩ଜଣ ଆଦିବାସୀ ମୃତ୍ୟୁବରଣ କରିଛନ୍ତି । ଏହା ବ୍ୟତୀତ କାଶୀପୁରର ଅନ୍ୟପଟେ ଷ୍ଟେରଲାଇଟ୍ କମ୍ପାନୀ ଶାଶୁବୋହୁ ମାଳୀ, ଣ୍ଡୁଙ୍ଗେର ଅଞ୍ଚଳରେ ଲାର୍ସନ ଏଣ୍ଡ ଟ୍ୟୁବ୍ରୋ କମ୍ପାନୀ ସିଜିମାଳୀ ଓ କୁଟ୍ରୁମାଳୀ, ଲକ୍ଷ୍ମୀପୁର ବ୍ଲକର କୋଡ଼ିଙ୍ଗା ମାଳୀର ବକ୍‌ସାଇଟ ପାଇଁ ବିରଳା କମ୍ପାନୀ, ଦଶମନ୍ତପୁର ବ୍ଲକ (କୋରାପୁଟ ଜିଲ୍ଲା) ଘୁସୁରୀମାଳୀ ଲାର୍ସନ ଆଣ୍ଡ ଟୁବ୍ରୋ କମ୍ପାନୀ ନେବା ପାଇଁ ଚେଷ୍ଟା କରୁଛନ୍ତି ।

(୬) ଗଞ୍ଜାମ ଜିଲ୍ଲାର ଗୋପାଳପୁର ଇସ୍ପାତ କାରଖାନା ପାଇଁ ଟିସ୍‌କୋ ଜମି ଅଧିଗ୍ରହଣ କରିଥିଲେ ମଧ ସେଠାରେ ଇସ୍ପାତକାରଖାନା ଜନଆନ୍ଦୋଳନ ଫଳରେ ହୋଇ ପାରିଲା ନାହିଁ କିନ୍ତୁ ଅଧିଗ୍ରହଣ କରିଥିବା ଜମିକୁ ଟିସକୋ ଏ ପର୍ଯ୍ୟନ୍ତ ବାସଚ୍ୟୁତ ଲୋକମାନଙ୍କୁ ଫେରସ୍ତ ନଦେଇ ନିଜ ହାତରେ ରଖିଛି ।

(୭) ୧୯୯୭ ମସିହାରେ ବଲାଙ୍ଗିରର ଲୋୟର ସୁକତେଲ ନଦୀ ବନ୍ଧ କରିବା ପାଇଁ ସରକାର ନିଷ୍ପତ୍ତି ନେଲେ । ଏହା ଫଳରେ ୨୬ଟି ଗ୍ରାମରୁ ୧୬ଟି ସମ୍ପୂର୍ଣ୍ଣ ଓ ୧୦ଟି ଆଶିଂକ ଜଳମଗ୍ନ ହେବ । ସରକାରଙ୍କର ସର୍ଭେ ଅନୁସାରେ ୪୧୬୦ ପରିବାର ବାସଚ୍ୟୁତ ହେବେ । ତନ୍ମଧରୁ ୨୯% ଆଦିବାସୀ, ୧୪% ହରିଜନ ଓ ଅବଶିଷ୍ଟ ସାଧାରଣ ବର୍ଗର । ଏହି ଡ୍ୟାମ ନିର୍ମାଣକୁ ସ୍ଥାନୀୟ ଲୋକମାନେ ବିରୋଧ କରିବା ଫଳରେ ଏଯାବତ୍ ଏ ଡ୍ୟାମ ହୋଇ ପାରିନାହିଁ ।

(୮) ମହାନଦୀ କୋଇଲା ଲମିଟେଡ୍ ପକ୍ଷରୁ ଅଧିଗ୍ରହଣ କରାଯାଇଥିବା ଜମିରୁ ବିସ୍ଥାପିତ ହୋଇଥିବା ୬୫୮୮ ପରିବାର ମଧରୁ ମାତ୍ର ୪୫୭୧ ପରିବାରକୁ ନିଯୁକ୍ତି

ମିଳିଥିବାବେଳେ ୨୦୧୨ ବାସଚ୍ୟୁତ ପରିବାର ଏପର୍ଯ୍ୟନ୍ତ ନିଯୁକ୍ତିକୁ ଚାହିଁ ବସିଛନ୍ତି ।

(୯) କଳିଙ୍ଗନଗର ଠାରେ ଥିବା ନୀଳାଚଳ ଇସ୍ପାତ ନିଗମ ଦୀର୍ଘ ଦିନ ଧରି କାର୍ଯ୍ୟ କରୁଥିଲେ ହେଁ ଏ ପର୍ଯ୍ୟନ୍ତ ମାତ୍ର ୧୫୭ଜଣଙ୍କୁ ନିଯୁକ୍ତି ମିଳିଛି ଓ ୪୮୨ଟି ବାସଚ୍ୟୁତ ପରିବାର ଘୋର ଦୁଃଖରେ କାଳ କାଟୁଛନ୍ତି ବର୍ତ୍ତମାନ ଏହାକୁ ଷ୍ଟିଲ ଅଥରଟି ଅଫ ଇଣ୍ଡିଆ ନେବାକୁ ସ୍ଥିର ହୋଇଛି ।

(୧୦) ଭାରତୀୟ ତୈଳ ନିଗମ, ପାରାଦୀପ ଠାରେ ଜମି ଅଧିଗ୍ରହଣ କରିଛନ୍ତି । ସେଠାରୁ ବିସ୍ଥାପିତ ହୋଇଥିବା ପରିବାର ମଧ୍ୟରୁ ମାତ୍ର ୬୫ଜଣଙ୍କୁ କାମ ଦିଆଯାଇଥିବାବେଳେ ୧୪୩ଟି ପରିବାର ଏପର୍ଯ୍ୟନ୍ତ କାମ ପାଇଁ ଅପେକ୍ଷା କରିଛନ୍ତି ଯଦିଓ ତୈଳ ବିଶୋଧନାଗାର ଏଯାବତ୍ କାର୍ଯ୍ୟ ଆରମ୍ଭ କରିନାହିଁ ।

୨୦୦୨ ମସିହା ସୁଦ୍ଧା ଓଡ଼ିଶା ସରକାର ସମୁଦାୟ ୪୨ଗୋଟି ବୁଝାମଣା ଚୁକ୍ତି ସ୍ୱାକ୍ଷରିତ କରିଛନ୍ତି । ଏମାନେ ସମୁଦାୟ ୧,୧୮,୦୦ କୋଟିଟଙ୍କାର ପୁଞ୍ଜି ବିନିଯୋଗ କରିବେ । ବହୁ ରାଷ୍ଟ୍ରୀୟ କମ୍ପାନୀ ଯଥା ବିଏଚ୍ପି - ବିଲଟନ, ବେଦାନ୍ତ, ରିଓ-ଟିନ୍ଟୋ, ଆଲାକାନ, ଆଦତ୍ୟି ବିରଳା ଗ୍ରୁପ, ଟାଟା ଗ୍ରୁପ୍, ସାଉଦଆରବିଆନ୍ କମ୍ପାନୀ ପୋସ୍କୋ ଇତ୍ୟାଦିର ଲମ୍ବାଧାଡି ଲାଗି ରହିଛି । ରାଜ୍ୟ ସରକାର ଖଣି ଲିଜ୍, ଓ ୧୦୦୦ ମିଲିୟନ ଟନ୍‌ର ବକ୍ସାଇଟ୍ ପଥରର ଲିଜ୍ ଦେଇ ସାରିଛନ୍ତି । ଏହା ବିକାଶର ଏକ ଭ୍ରମାତ୍ମକ ଚିତ୍ର ସୃଷ୍ଟି କରୁଛି । ବ୍ୟାପକ ଭାବରେ ହେଉଥିବା ଶିଳ୍ପାୟନ ମାନବ ବିକାଶର ମାପଦଣ୍ଡ ନୁହେଁ ।

**ପୋସ୍କୋ କମ୍ପାନୀ:-**

ଗତ ଜୁନ-୨୦୦୫ ମସିହାରେ ସାଉଥ କୋରିଆର ପୋସ୍କୋ କମ୍ପାନୀ ସହିତ ବୁଝାମଣା ଚୁକ୍ତି ସ୍ୱାକ୍ଷରିତ ହୋଇଛି । ପୋହାଙ୍ଗ ଷ୍ଟିଲ କମ୍ପାନୀ ସବୁଠାରୁ ବଡ ଷ୍ଟିଲ କମ୍ପାନୀ ଏବଂ ଭାରତର ସବୁଠାରୁ ବେଶୀ ପ୍ରତ୍ୟକ୍ଷ ବିଦେଶୀ ପୁଞ୍ଜି ବିନିଯୋଗ କରିବ ବୋଲି କୁହାଯାଉଛି । ଏହି ପ୍ରୋଜେକ୍ଟ ଫଳରେ ଜଗତସିଂହପୁର ଓ କେନ୍ଦୁଝର ଜିଲ୍ଲା କ୍ଷତିଗ୍ରସ୍ତ ହେବ । ଏଠାକାର ଅଧିବାସୀମାନେ ଏହା ବିରୋଧରେ ଆନ୍ଦୋଳନ ଆରମ୍ଭ କଲେଣି । ରାଜ୍ୟ ସରକାର କୁଜଙ୍ଗ ତହସିଲର ୩୫୬୬ ଏକର ଜମି ଅଧିଗ୍ରହଣ କରିବା ପାଇଁ ନୋଟିସ୍ ଜାରି କଲେଣି । ଏହା ଦ୍ୱାରା ୫ଗୋଟି ଗ୍ରାମର ୩୦୦ ପରିବାର ବାସଚ୍ୟୁତ ହେବେ । ଏଠାକାର ଲୋକମାନେ ପାନ, ମାଛ, ଧାନ ଓ କାଜୁ ଉପରେ ନିର୍ଭର କରନ୍ତି ଯାହା ଏହାଦ୍ୱାରା କ୍ଷତିଗ୍ରସ୍ତ ହେବ । ୨୦୦ ପରିବାରକୁ ୫୦୦ କୋଟି ଟଙ୍କା କ୍ଷତିପୂରଣ ଦେବାକୁ ପୋସ୍କୋ ଘୋଷଣା କରିଥିଲେ ମଧ୍ୟ ଏହା ଦ୍ୱାରା ଅଧିକ କ୍ଷତିଗ୍ରସ୍ତ ହେବେ । ଏହି ଶିଳ୍ପ ପାଇଁ ୮୪୫ ଏକର ଜଙ୍ଗଲ ଜମି ଦରକାର । ଏଠାରେ ରହୁଥିବା ଆଦିବାସୀମାନେ ଦୀର୍ଘ ୩୦ ବର୍ଷରୁ ଅଧିକ ଦିନ ଧରି ଏଠାରେ ବସବାସ କରି ରହୁଛନ୍ତି ଯଦିଓ ଏମାନଙ୍କୁ ଏପର୍ଯ୍ୟନ୍ତ ଜମିର ସତ୍ତ୍ୱ ମିଳିନାହିଁ ।

ସବୁଠାରୁ ଅତ୍ୟନ୍ତ ଦୁଃଖଦାୟକ ଘଟଣା ଏହି ଯେ ସରକାର କମ୍ପାନୀମାନଙ୍କର ବ୍ୟବସାୟ ପାଇଁ ଯେଉଁ ଜମି ଅଧିଗ୍ରହଣ କରୁଛନ୍ତି, ତାହା ହେଉଛି ଜଙ୍ଗଲ ଜମି ଓ ଆଦିବାସୀମାନଙ୍କର ଚାଷଜମି । ଓଡ଼ିଶାରେ ଯେତେବେଳେ ଯେଉଁ ସରକାର ଆସିଛି, ସେମାନେ ଉଦ୍ୟୋଗୀ କରଣ ନାଁରେ ଲୋକମାନଙ୍କୁ ଜୋର ଜବରଦସ୍ତ ବିସ୍ଥାପିତ କରିଛନ୍ତି । ଏହା ଟାଟା ପାଇଁ ଗୋପାଳପୁର ହୋଇପାରେ କିମ୍ବା ବେଦାନ୍ତ ଆଲୁମିନିୟମ ପାଇଁ ମାଇକଞ୍ଚ । "ସେମାନଙ୍କୁ ବାହାର କର ନଚେତ୍ ହତ୍ୟା କର ।" ଏହା ସରକାରଙ୍କର ସ୍ଲୋଗାନ ହୋଇଛି । ଏମାନେ ବାସଚ୍ୟୁତ ହେଲେ ଏମାନଙ୍କୁ କୌଣସି କ୍ଷତିପୂରଣ କିମ୍ବା ବସବାସ କରିବାର ବ୍ୟବସ୍ଥା ହେବ ନାହିଁ ।

ଜଟାଧାରୀ ମୁହାଣରେ କମ୍ପାନୀ ପକ୍ଷରୁ ଆଉ ଗୋଟିଏ ବନ୍ଦର ପ୍ରତିଷ୍ଠା କରାଯିବା ପାଇଁ କମ୍ପାନୀ ପକ୍ଷରୁ କୁହାଯାଇଛି । ଏହା ପାରାଦ୍ୱୀପ ବନ୍ଦର ଉପରେ ପ୍ରଭାବ ପକାଇବା ସହିତ ସାମୁଦ୍ରିକ ବିରଳ କଇଁଛ ମାନଙ୍କର ମୃତ୍ୟୁର କାରଣ ହେବ ।

ଏ ସମ୍ପର୍କରେ ପ୍ରାଥମିକ ଭାବେ କୌଣସି ଅନୁସନ୍ଧାନ ଓ ଅଧ୍ୟୟନ କରାନଯାଇ ଶିଳ୍ପ ଓ ବନ୍ଦର କରିବା ପାଇଁ ଜମି ଅଧିଗ୍ରହଣ କରିବା ଏବଂ ଖଣି ଲିଜ୍ ଦେବା ଏବଂ ଶିଳ୍ପ ପାଇଁ ଲାଇସେନ୍ସ ଦେବା କାର୍ଯ୍ୟ ସମ୍ପନ୍ନ ହୋଇଛି । ରାଜ୍ୟ ସରକାର ଅନ୍ଧ ଭାବରେ ଏହି ପ୍ରଶ୍ନ ସବୁକୁ ଏଡାଇଯାଇ ଅଧିକ ନିଯୁକ୍ତି ସମ୍ଭାବନା ସୃଷ୍ଟି ହେବ ବୋଲି ସେଠାକାର ଲୋକମାନଙ୍କ ନିକଟରେ ଭ୍ରାନ୍ତ ଧାରଣା ସୃଷ୍ଟି କରୁଛନ୍ତି । ଶିଳ୍ପ ଓ ବନ୍ଦର ହେଲେ ପ୍ରତ୍ୟକ୍ଷ ଭାବରେ ୧୩ହଜାର ଓ ପରୋକ୍ଷ ଭାବରେ ୩୫ହଜାର ଏପରି ସର୍ବମୋଟ ୪୮ ହଜାର ନିଯୁକ୍ତି ସମ୍ଭାବନା ସୃଷ୍ଟି ହେବ । ଏସବୁ ଆଞ୍ଚଳିକ ଲୋକମାନଙ୍କୁ ମିଳିବ ବୋଲି କୁହାଯାଇନପାରେ କିନ୍ତୁ ଏହା ଦ୍ୱାରା ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ୨.୫ଲକ୍ଷ ଲୋକ କ୍ଷତିଗ୍ରସ୍ତ ହେବେ ।

**କଳିଙ୍ଗନଗର:-**

ଯାଜପୁର ଜିଲ୍ଲାର କଳିଙ୍ଗନଗରକୁ ଏକ ବୃହତ ଶିଳ୍ପ ନଗରୀରେ ପରିଣତ କରିବା ପାଇଁ ଏଠାରେ ନିଳାଚଳ ଇସ୍ପାତ ନିଗମ, ମୋସ୍କୋ, ଜିନ୍ଦଲ, ଭିସା, କେକେ ଇସ୍ପାତ ଇତ୍ୟାଦି କମ୍ପାନୀକୁ ସରକାର ଜମି ଲୋକମାନଙ୍କ ଠାରୁ ଅଳ୍ପ ମୂଲ୍ୟରେ ଅଧିଗ୍ରହଣ କରି କମ୍ପାନୀମାନଙ୍କୁ ବେଶୀ ମୂଲ୍ୟରେ ବିକ୍ରୀ କରିଛନ୍ତି । ୧୯୯୨ ମସିହାରେ ସରକାର ଏହି ଅଞ୍ଚଳରକୁ ୧୩,୦୦୦ ଏକର ଜମି ଅଧିଗ୍ରହଣ କରିଛନ୍ତି । ନିଳାଚଳ ଇସ୍ପାତ ନିମଗ ୨୫୦୦ ଏକର, ମୋସ୍କୋ ୫୯୩ ଏକର, ଜିନ୍ଦର ଷ୍ଟେନଲେସ ୪୦ ଏକର, ଭିସା ୩୯୦ ଏକର, କେକେ ଇସ୍ପାତ ୨୫ଏକର, ଦିନବନ୍ଧୁ ୫୦ ଏକର, ରୋହି ଫେରୋଆଲଏଜ୍ ୧୦୦ ଏକର, ମହାରାଷ୍ଟ୍ର ସିମ୍‌ଲେସ୍ ୫୦୦ଏକର, ମେଷ୍ଟନ ଫେରୋଆଲଏଜ୍ ୧୦୦ଏକର ଓ ଟାଟା ଷ୍ଟିଲ ୨୦୦୦ଏକର ଜମି କିଣିଛନ୍ତି । ଏହା ଫଳରେ ପ୍ରାୟ ୩୦୦୦ରୁ ଅଧିକ ପରିବାର ବିସ୍ଥାପିତ ହେଉଥିବାରୁ ଏବଂ ସେମାନଙ୍କୁ

ସଠିକ ଭାବରେ କ୍ଷତିପୂରଣ ଦିଆଯାଇନଥିବାରୁ ସେଠାରେ ବ୍ୟାପକ ଅସନ୍ତୋଷ ଦେଖାଦେଇଛି ।

କଳିଙ୍ଗନଗର ଠାରେ ଟାଟା ଷ୍ଟିଲ ପକ୍ଷରୁ ୬ ମିଲିୟନ ଟନର ଇସ୍ପାତ କାରଖାନାକୁ ୧୨ ମିଲିୟନ ବଢାଇବାକୁ ନିଷ୍ପତ୍ତି ନେଇଛି ଏବଂ ବିସ୍ଥାପିତ ହେଉଥିବା ଲୋକମାନଙ୍କୁ ଯଥେଷ୍ଟ ପରିମାଣରେ କ୍ଷତିପୂରଣ ନଦେଇ ଜୋର ଜବରଦସ୍ତ ପାଚେରୀ ନିର୍ମାଣ ଫଳରେ ଏହାକୁ ବିରୋଧ କରିବାରୁ ୧୨ ଜଣ ଆଦିବାସୀଙ୍କର ମୃତ୍ୟୁ ଘଟିଛି । ଖଣି ଭିତ୍ତିକ ଶିଳ୍ପ ଛତୁ ଫୁଟିବା ପରି ଗଢି ଉଠିବା ଫଳରେ ଲୋକମାନେ ଏକ ପକ୍ଷରେ ବିସ୍ଥାପିତ ହେବା ଓ ସରକାର ରାଜ୍ୟର ସ୍ୱାର୍ଥକୁ ଉପେକ୍ଷା କରି ବଡବଡ କମ୍ପାନୀ ମାନଙ୍କର ସ୍ୱାର୍ଥକୁ ସୁରକ୍ଷା କରିବା ବର୍ତ୍ତମାନ ଏକ ମୌଳିକ ପ୍ରଶ୍ନ ଭାବେ ମୁଣ୍ଡ ଟେକିଛି ।

ଏହା ଅତ୍ୟନ୍ତ ନିଷ୍ଠୁର ସତ୍ୟ ଯେ ରାଜ୍ୟସରକାର ବିକାଶ ପାଇଁ ଏକ ତ୍ରୁଟିପୂର୍ଣ୍ଣ କୌଶଳ ଅବଲମ୍ବନ କରିଛନ୍ତି ଯାହା ଫଳରେ ବାସଚ୍ୟୁତ ହୋଇ ଥଇଥାନ ହୋଇଥିବା ଲୋକମାନଙ୍କର ପୂର୍ବ ତୁଳନାରେ ଆୟ କମିଛି, ଜମି ଅଳ୍ପ ମିଳିଛି ବା ମିଳିନାହିଁ କମ୍ କାମ କରିବାର ସୁଯୋଗ, ନିମ୍ନମାନର ଗୃହ ଏବଂ ଅନ୍ୟାନ୍ୟ ପଦାର୍ଥ ପାଇବାର ସୁଯୋଗର ଅଭାବ ସୃଷ୍ଟି ହୋଇଛି ।

୧୯୫୦ ମସିହାରୁ ଏଯାବତ ୫୦ ନିୟୁତଲୋକ ବାସଚ୍ୟୁତ୍ ହେଲେଣି ଏବଂ ଏମାନଙ୍କ ମଧ୍ୟରୁ ୫୦ ପ୍ରତିଶତ ଆଦିବାସୀ । ଏବଂ ସେମାନଙ୍କର ସ୍ଥିତି ଓ ସ୍ଥାୟିତ୍ୱର କୌଣସି ନିର୍ଦ୍ଦିଷ୍ଟ ରୂପ ନାହିଁ । ବାସ୍ତବରେ କହିଲେ ବହୁ ସଂଖ୍ୟାରେ ପ୍ରଜାତିଙ୍କର କୌଣସି ଚିହ୍ନବର୍ଣ୍ଣ ନାହିଁ ।

ଯେଉଁଠାରେ ଲୋକମାନଙ୍କୁ ବିସ୍ଥାପିତ କରାଯାଇଛି ସେଠାକାର ଅଧିକାଂଶ ଅଧିବାସୀ ଆଦିବାସୀ, ଦଳିତ ଓ ଅନ୍ୟାନ୍ୟବର୍ଗର ଏବଂ ସେମାନଙ୍କ ପାଖରେ ଜମିର କାଗଜ ପତ୍ର ନାହିଁ ଯଦିଓ ଦୀର୍ଘ ୫।୬ ପୁରୁଷ ଧରି ସେମାନେ ସେହି ଜମିକୁ ଭୋଗ ଦଖଲ କରିଆସୁଛନ୍ତି । କିନ୍ତୁ ସରକାର ସେହିମାନଙ୍କୁ କ୍ଷତିପୂରଣ ଦେଉଛନ୍ତି, ଯେଉଁମାନଙ୍କ ନାମରେ ଜମିର ସତ୍ତ୍ୱ ରହିଛି । ଏହା ବସବାସ କରି ରହୁଥିବା ଲୋକଙ୍କୁ ବିବ୍ରତ କରୁଛି ।

## ଶିଳ୍ପ ବିକାଶ ହେତୁ ଓଡ଼ିଶା ପାଇଛି କ'ଣ ?:-

ସରକାର ବିଧାନସଭାରେ କହିଛନ୍ତି ଯେ ୨୦୦୨-୦୩ରେ ୧୦୩୧୩୨୯ ନିୟୁତ ମେଟ୍ରିକ୍‌ଟନ୍, ୨୦୦୩-୦୪ରେ ୯୦୪୧୧୮୩୨ ନିୟୁତ ମେଟ୍ରିକ୍‌ଟନ୍ ଏବଂ ୨୦୦୪-୦୫ରେ ୯୯୯୬୬୭୩ ନିୟୁତ ମେଟ୍ରିକ୍‌ଟନ୍ ଲୁହାପଥର ଅର୍ଥାତ୍ ୨୦୦୨ରୁ ୨୦୦୫ ମସିହା ମଧ୍ୟରେ ସର୍ବମୋଟ ୩୪୧୨୩୬୭୦ ନିୟୁତ ମେଟ୍ରିକ୍ ଟନ୍ ଲୁହାପଥର ବିଦେଶକୁ ରପ୍ତାନୀ କରାଯାଇଛି ।

ପ୍ରଶ୍ନ ଉଠୁଛି ବିଶ୍ୱ ବଜାରରେ ଏହି ଲୁହାପଥରର ଧାର୍ଯ୍ୟ ମୂଲ୍ୟ କେତେ ଏବଂ ଓଡ଼ିଶା ଏ ବାବଦରେ କେତେ ଟଙ୍କା ପାଇଛି ଏବଂ ରାଜସ୍ୱ କେତେ ମିଳିଛି ? ପୁନଶ୍ଚ ସରକାରଙ୍କର ରିପୋର୍ଟ ଅନୁଯାୟୀ ୨୦୦୦-୦୧ରେ ୬୮୦ ଲକ୍ଷ ଟନ୍ ୨୦୦୧-୦୨ରେ ୭୫୦ଲକ୍ଷ, ୨୦୦୨-୦୩ରେ ୮୭୪ଲକ୍ଷ, ୨୦୦୩-୦୪ରେ ୧୦କୋଟି ୮୦ଲକ୍ଷ ଟନ୍, ୨୦୦୪-୦୫ରେ ୧୨ କୋଟି ୭୦ଲକ୍ଷ ଟନ୍ ଖଣିଜ ସାମଗ୍ରୀ ଉତ୍ତୋଳିତ ହୋଇଥିଲା ।

୨୦୦୦-୦୧ରେ ୨୭୭୬କୋଟି ଟଙ୍କା, ୨୦୦୪-୦୫ରେ ୬୧୪୮କୋଟି ଟଙ୍କା ଉତ୍ତୋଳିତ ହୋଇଥିବା ଖଣିଜ ସାମଗ୍ରୀର ମୂଲ୍ୟ ୨୦୦୦-୦୧ବର୍ଷର ଖଣିଜ କ୍ଷେତ୍ରରୁ ମାତ୍ର ୩୬୦ କୋଟି ଓ ୨୦୦୪-୦୫ରେ ମାତ୍ର ୬୭୦କୋଟି ଟଙ୍କା ରାଜସ୍ୱ ମିଳିଛି । ଏହି ୬୧୪୮ କୋଟି ଟଙ୍କାର ଖଣିଜ ସାମଗ୍ରୀକୁ ନେଇ ବିଭିନ୍ନ କମ୍ପାନୀ ମାଲାମାଲ ହୋଇଥିବାବେଳେ ଓଡ଼ିଶା ପାଇଛି ମାତ୍ର ୬୧୨ କୋଟି ଟଙ୍କା ।

ତେଣୁ ଏ ଶିଳ୍ପ ବିକାଶ ପ୍ରକ୍ରିୟା କାହା ସ୍ୱାର୍ଥରେ ?

## ଉଦ୍ୟୋଗୀକରଣ ବା ଶିଳ୍ପାୟନର କୌଶଳ:-

ଯେଉଁମାନେ ଶିଳ୍ପ ଓ ଶିଳ୍ପାୟନ ସପକ୍ଷବାଦୀ ଏପରିକି ରାଜ୍ୟ ସରକାର ସେମାନଙ୍କ ମତରେ ଶିଳ୍ପକୁ ବିରୋଧ କରୁଥିବା ଲୋକମାନେ ରାଜ୍ୟର ପ୍ରଗତି ଓ ବିକାଶର ବିରୋଧି । ଶିଳ୍ପ ହେବା ଅର୍ଥ ପୁଞ୍ଜି ବିନିଯୋଗ ହେବ । ଓଡ଼ିଶାରେ ଶିଳ୍ପାୟନ କରିବା ଅର୍ଥ ହେଉଛି ଖଣିଜ ପଦାର୍ଥ ଭିତ୍ତିକ ଶିଳ୍ପ । ଓଡ଼ିଶାର ଖଣିଜ କ୍ଷେତ୍ର ହିଁ ଏକମାତ୍ର କ୍ଷେତ୍ର ଯେଉଁଠି ଦେଶୀ ବିଦେଶୀ କମ୍ପାନୀମାନେ ପଇସା ଖଟାଇବା ପାଇଁ ଆଗ୍ରହୀ । ତେଣୁ କୌଣସି ଗୋଟିଏ ପ୍ରକାର ଶିଳ୍ପାୟନର ଢାଞ୍ଚାକୁ ବିଶେଷ କରି ବୃହତ ଶିଳ୍ପକୁ ଯଦି କେହି ବିରୋଧ କରେ, ତାଙ୍କୁ ଶିଳ୍ପବିରୋଧି କହିବା ଯଥାର୍ଥ ନୁହେଁ । କିନ୍ତୁ ଶିଳ୍ପ ସପକ୍ଷବାଦୀ ଓ ଶିଳ୍ପପତିମାନେ ଏହା କହି ଲୋକମାନଙ୍କର ଦୃଷ୍ଟିକୁ ବିକଳ୍ପ ଠାରୁ ଅଲଗା କରି ଦେଉଛନ୍ତି ।

ଅନ୍ୟ କେତେକ ଶିଳ୍ପ ସପକ୍ଷବାଦୀ ନିଷ୍ପତ୍ତିକୁ ଲୋକମାନଙ୍କ ଉପରେ ଲଦି ଦିଅନ୍ତି । ସେମାନଙ୍କ ମତରେ ଯଦି ଲୋକମାନେ ବାସ୍ତବିକ ଢଙ୍ଗରେ ବୁଝନ୍ତେ ଯେ ଏହି ଯେଉଁ ଇସ୍ପାତ କିମ୍ବା ଆଲୁମିନିୟମ ପ୍ଲାଣ୍ଟ ଯଦି ବିରାଟ ଆକାରର ହୁଏ, ତେବେ ଲୋକମାନେ ଅଧିକ ଆର୍ଥିକ ସୁବିଧା ଲାଭ କରିବେ ତେବେ ସେମାନେ ଏହାକୁ ବିରୋଧ କରନ୍ତେ ନାହିଁ । ଏପରି ଦୃଷ୍ଟିଭଙ୍ଗୀ ଓଡ଼ିଶାର ବ୍ୟୁରୋକ୍ରାଟମାନେ ବେଶ୍ ଚମତ୍କାର ଯୁକ୍ତି ଛଳରେ ବୁଝାନ୍ତି । ତେଣୁ ଦେଶୀ-ବିଦେଶୀ ପୁଞ୍ଜି ବିନିଯୋଗ ପାଇଁ ଯେଉଁମାନେ ଓଡ଼ିଶାକୁ ଆସୁଛନ୍ତି ସେମାନଙ୍କର ନଜର ଆମର ଖଣିଜ ସମ୍ପଦ ଉପରେ । ସେମାନଙ୍କର ଓଡ଼ିଶାର ଅବହେଳିତ କୃଷି, ଜଙ୍ଗଲ, ସମ୍ପଦ, ପାଣି ତଥା ୮୦ଭାଗ ଲୋକଙ୍କର ଜୀବନଜୀବିକା ସହିତ ଏହି ପୁଞ୍ଜି ବିନିଯୋଗର କୌଣସି ସମ୍ପର୍କ

ନାହିଁ । ତେଣୁ ଯଦି ଶିଳ୍ପାୟନ ନାମରେ ପୁଞ୍ଜି ବିନିଯୋଗକୁ ପ୍ରଶ୍ରୟ ଦିଆଯାଏ, ତେବେ ଓଡ଼ିଶାର ଆଦିବାସୀ, ଦଳିତ ଲୋକମାନଙ୍କର ବିସ୍ଥାପନ ଅବଶ୍ୟମ୍ଭାବୀ । ଯିଏ ପୁଞ୍ଜି ବିନିଯୋଗ କରିବ ସିଏ ଲାଭ ପାଇବ, ସୁତରାଂ ସେ ନିଷ୍ପତ୍ତି ନେବ କେଉଁଠି ସେ ପୁଞ୍ଜିକୁ ବନିଯୋଗ କରିବ । ତେଣୁ ଓଡ଼ିଶାରେ ପୁଞ୍ଜି ବିନିଯୋଗ କରିବାକୁ ଆଗ୍ରହୀ ଶିଳ୍ପପତି ମାନଙ୍କର ସର୍ତ୍ତକୁ ରାଜ୍ୟସରକାର ସବୁକିଛି ବିନିମୟରେ ମାନୁଛନ୍ତି । ଏବଂ ରାଜ୍ୟର ପ୍ରଭୂତ ସମ୍ପଦା (ଜମି, ଜଳ, ଜଙ୍ଗଲ, ଖଣି, ପରିବେଶ, କିମ୍ବା ପ୍ରାକୃତିକ ସମ୍ପଦ)କୁ ବଡବଡ ବହୁଜାତିକ ଓ ବହୁରାଷ୍ଟ୍ରୀୟ କମ୍ପାନୀକୁ ଅଳ୍ପ ମୂଲ୍ୟରେ ହସ୍ତାନ୍ତର କରୁଛନ୍ତି ସେତେବେଳେ ରାଜ୍ୟ ସରକାର ଭାବୁନାହାନ୍ତି ଯେ ସେଠାରେ ବସବାସ କରି ରହୁଥିବା ଲୋକମାନଙ୍କର "ଏହା ନକରିବାକୁ ମନା କରିବାର ପ୍ରଥମ ଅଧିକାର" ରହିଛି । କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ଶିଳ୍ପ କରିବା ପାଇଁ ଅନୁମତି ଦେବା ପୂର୍ବରୁ ଓ ଜମି ହସ୍ତାନ୍ତର କରିବା ପୂର୍ବରୁ ପ୍ରଥମେ ସେଠି ବସବାସ କରି ରହୁଥିବା ଲୋକମାନଙ୍କର ମତ ପ୍ରତି ଗୁରୁତ୍ୱ ଦିଆଯିବା ଉଚିତ୍ । ଏପରିକି ଯଦି ସେମାନେ ମଧ୍ୟ ସମ୍ମତି ପ୍ରଦାନ କରନ୍ତି, ତେବେ ବିସ୍ଥାପିତ ହେଉନଥିବା ନାଗରିକ ମାନଙ୍କର ମଧ୍ୟ ନିଜର ମତ ଦେବାର ଅଧିକାର ରହିଛି । କାରଣ ଶିଳ୍ପଜନିତ ପରିବେଶ ପ୍ରଦୂଷଣ, ଜଳ, ଜମିର ପ୍ରଦୂଷଣ ଆଖପାଖ ଅଞ୍ଚଳକୁ ପ୍ରଭାବିତ କରିବ ।

**ପୁନର୍ବାସ ଓ ଥଇଥାନ ନୀତି :-**

ଶିଳ୍ପାୟନ ଓ ଅନ୍ୟାନ୍ୟ ବିକାଶ ସମ୍ପର୍କିତ ବିସ୍ଥାପନ ସମ୍ପର୍କରେ ସୂଚନା ଦେବାବେଳେ ଓଡ଼ିଶା ସରକାର କି ପ୍ରକାର ଥଇଥାନ ନୀତି ଗ୍ରହଣ କରିଛନ୍ତି, ତାହା ମଧ୍ୟ ଆଲୋଚନା ଆବଶ୍ୟକ କରେ । କଳିଙ୍ଗ ନଗର ଘଟଣା ପରେ ଓ ପୋସ୍କୋ ପ୍ରକଳ୍ପକୁ ଆଖି ଆଗରେ ରଖି ରାଜ୍ୟ ସରକାର ମେ ମାସ ୪ ତାରିଖରେ ଓଡ଼ିଶା ପୁନର୍ବାସ ଓ ଥଇଥାନ ନୀତି-୨୦୦୬ (Orissa Resettlement and Rehabilitation policy'2006) ଘୋଷଣା କରିଛନ୍ତି ଯାହାର ମୁଖ୍ୟ କେତେକ ଅଂଶ ନିମ୍ନରେ ପ୍ରଦତ୍ତ କରାଯାଇଛି । ଏହି ନୀତି ଘୋଷଣା କରି ସରକାର ଗଣ ମାଧ୍ୟମ ଜରିଆରେ ପ୍ରଚାର କରିଛନ୍ତି ଯେ ଏହା ଏକ 'ପ୍ରଗତିଶୀଳ ଥଇଥାନ ନୀତି' ଓ 'ସବୁରି ଉନ୍ନତି, ରାଜ୍ୟର ପ୍ରଗତି' ଏବଂ "ଆଦିବାସୀ ଓ ଗରିବ ଲୋକଙ୍କୁ ସୁହାଇଲାଭଳି ପୁନର୍ବାସ ଓ ଥଇଥାନ ନୀତି ପ୍ରସ୍ତୁତରେ ଓଡ଼ିଶା ଅନ୍ୟ ରାଜ୍ୟ ତୁଳନାରେ ଅଗ୍ରଣୀ ।" ଏହା ବ୍ୟତୀତ କଳିଙ୍ଗନଗର ଶିଳ୍ପ ପ୍ରକଳ୍ପ ଦ୍ୱାରା ବିସ୍ଥାପିତ ପରିବାରଙ୍କ ପାଇଁ ବିଶେଷ ସାହାଯ୍ୟ ବ୍ୟବସ୍ଥା ମଧ୍ୟ ଘୋଷଣା କରାଯାଇଛି ଯାହା ନିମ୍ନରେ ପ୍ରଦତ୍ତ କରାଯାଇଛି ।

**(କ) ଓଡ଼ିଶା ପୁନର୍ବାସ ଓ ଥଇଥାନ ନୀତି-୨୦୦୬**

ଏଣିକି ଗ୍ରାମସଭାର ପରାମର୍ଶରେ ପୁନର୍ବାସ ଓ ଥଇଥାନ ଯୋଜନା ପ୍ରସ୍ତୁତ କରାଯିବ ।

ଭୂମି ଅଧିଗ୍ରହଣ ନିମନ୍ତେ ବିଜ୍ଞପ୍ତି ପ୍ରକାଶ ପାଇବା ପରେ, ପ୍ରକଳ୍ପ କର୍ତ୍ତୃପକ୍ଷ ଜମିମାଲିକଙ୍କ ସହିତ କଥାବାର୍ତ୍ତା କରି ସିଧାସଳଖ ସେମାନଙ୍କ ଠାରୁ ଜମି କିଣିପାରିବେ । ଅନ୍ୟଥା ଆଇନ୍ ଅନୁଯାୟୀ ଜମି ଅଧିଗ୍ରହଣ କରାଯିବ ।

ପ୍ରତ୍ୟେକ ପ୍ରକଳ୍ପ ପାଇଁ ପୁନର୍ବାସ ଓ ପାରିପାର୍ଶ୍ୱିକ ଉନ୍ନୟନ ସମିତି ଗଠନ କରାଯିବ । ଏହି ସମିତି ପ୍ରକଳ୍ପ ଯୋଗୁଁ ବିସ୍ଥାପିତ ହେବାକୁ ଥିବା ପରିବାରମାନଙ୍କର ତାଲିକା ଚୂଡ଼ାନ୍ତ କରିବେ । ଏହି ସମିତି ପୁନର୍ବାସ ନୀତି ଅନୁଯାୟୀ ପାରିପାର୍ଶ୍ୱିକ ଉନ୍ନୟନ ସମିତି ଗଠନ କରାଯିବ । ଏହି ସମିତି ପ୍ରକଳ୍ପ ଯୋଗୁଁ ବିସ୍ଥାପିତ ହେବାକୁ ଥିବା ପରିବାରମାନଙ୍କର ତାଲିକା ଚୂଡ଼ାନ୍ତ କରିବେ । ଏହି ସମିତି ପୁନର୍ବାସ ନୀତି ଅନୁଯାୟୀ ପାରିପାର୍ଶ୍ୱିକ ଉନ୍ନୟନ ଏବଂ ପୁନର୍ବାସ ତଥା ଥଇଥାନ ଯୋଜନା ପ୍ରସ୍ତୁତ କରିବେ ।

ପୁନର୍ବାସ ଓ ପାରିପାର୍ଶ୍ୱିକ ଉନ୍ନୟନ ସମିତି ଦ୍ୱାରା ଅନୁମୋଦିତ ଥଇଥାନ କାର୍ଯ୍ୟ ହେବା ପୂର୍ବରୁ କାହାରିକୁ ଉଚ୍ଛେଦ କରାଯିବ ନାହିଁ ।

ଶିଳ୍ପ ପ୍ରକଳ୍ପ କ୍ଷେତ୍ରରେ ମୂଳ ପରିବାରର ମନୋନୀତ ଜଣେ ବ୍ୟକ୍ତିଙ୍କୁ ନିଯୁକ୍ତି ସୁବିଧା ଯୋଗାଇ ଦିଆଯିବ ଏବଂ ଖଣି ପ୍ରକଳ୍ପ କ୍ଷେତ୍ରରେ ଉଭୟ ମୂଳ ତଥା ବୃହତ୍ତର ପରିବାରର ଲୋକଙ୍କୁ ଏହି ସୁବିଧା ଦିଆଯିବ ।

ଶିଳ୍ପ ତଥା ଖଣି ପ୍ରକଳ୍ପ କ୍ଷେତ୍ରରେ ପରିବାରର ଯେଉଁ ବ୍ୟକ୍ତିଙ୍କୁ ନିଯୁକ୍ତି ସୁବିଧା ଯୋଗାଇ ଦିଆଯିବ ଏବଂ ଖଣି ପ୍ରକଳ୍ପ କ୍ଷେତ୍ରରେ ଉଭୟ ମୂଳ ତଥା ବୃତ୍ତର ପରିବାରର ଲୋକଙ୍କୁ ଏହି ସୁବିଧା ଦିଆଯିବ ।

ଆବଶ୍ୟକ ସ୍ଥଳେ, ସେମାନଙ୍କୁ ନିଯୁକ୍ତି ବଦଳରେ ଯୋଗାଇ ଦିଆଯାଉଥିବା ଏକକାଳୀନ ଆର୍ଥିକ ସହାୟତାର ଶତକଡ଼ା ପଚାଶ ଭାଗ ଶିଳ୍ପ ତଥା ଖଣି ପ୍ରକଳ୍ପର ଅଂଶଧନର ବା ବଣ୍ଡ ଆକାରରେ ଦିଆଯାଇପାରିବ ।

ପ୍ରକଳ୍ପ ନିମନ୍ତେ କର୍ତ୍ତୃପକ୍ଷ ଆତ୍ମନିଯୁକ୍ତି ନିମନ୍ତେ ଲୋକମାନଙ୍କୁ ତାଲିମ ଦେବେ ।

ପୁନର୍ବାସ କରାଯାଉଥିବା ସ୍ଥାନରେ ଦଶ ଡେସିମିଲ (ଅଢ଼େଇ ଗୁଣ୍ଠ) ଘରଡିହ କିମ୍ବା ତା' ବଦଳରେ ପଚାଶ ହଜାର ଟଙ୍କା ଯୋଗାଇଦେବେ, ଗୃହ ନିର୍ମାଣ ନିମନ୍ତେ ଦେଢ଼ ଲକ୍ଷ ଟଙ୍କା ସହାୟତା ଦେବେ ଏବଂ ଉପଯୁକ୍ତ ସ୍ଥାନରେ ଦୋକାନ ଘର ବା ସେବା ଯୋଗାଣ କେନ୍ଦ୍ର ପାଇଁ ଘର ଯୋଗାଇଦେବେ ।

ଜଳସେଚନ ପ୍ରକଳ୍ପ, ଜାତୀୟ ଉଦ୍ୟାନ ଏବଂ ଅଭୟାରଣ୍ୟ ପ୍ରତିଷ୍ଠା କ୍ଷେତ୍ରରେ ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କୁ ଦଶ ଡେସିମିଲ (ଅଢ଼େଇ ଗୁଣ୍ଠ) ଘରଡିହ ବା ପଚାଶ ହଜାର ଟଙ୍କା ଏବଂ ଗୃହ ନିର୍ମାଣ ସହାୟତା ବାବଦକୁ ଦେଢ଼ ଲକ୍ଷ ଟଙ୍କା ଯୋଗାଇ ଦିଆଯିବ ।

ଜଳସେଚନ ପ୍ରକଳ୍ପ, ଜାତୀୟ ଉଦ୍ୟାନ ଏବଂ ଅଭୟାରଣ୍ୟ ପ୍ରତିଷ୍ଠା କ୍ଷେତ୍ରରେ ବିସ୍ଥାପିତ ହେଉଥିବା ପ୍ରତ୍ୟେକ ତଫସିଲଭୁକ୍ତ ଜନଜାତି ପରିବାରକୁ ଅଢ଼େଇ ଏକର ଜଳସେଚିତ ଜମି ବା ସେ ବାବଦରେ ଏକର ପିଛା ଦୁଇ ଲକ୍ଷ ଟଙ୍କା କିମ୍ବା ପାଞ୍ଚ ଏକର ଅଣଜଳସେଚିତ ଜମି ବା ସେ ବାବଦରେ ଏକର ପିଛା ଏକ ଲକ୍ଷ ଟଙ୍କା ହିସାବରେ ଆର୍ଥିକ ସହାୟତା ଦିଆଯିବ ।

ତଫସୁଲଭୁକ୍ତ ଜନଜାତି ବ୍ୟତୀତ ଅନ୍ୟ ସମସ୍ତ ବିସ୍ଥାପିତ ପରିବାରଙ୍କ କ୍ଷେତ୍ରରେ, ପ୍ରତ୍ୟେକ ପରିବାରକୁ ଦୁଇ ଏକର ଜଳସେଚିତ ଜମି ବା ସେ ବାବଦରେ ଏକର ପିଛା ଦୁଇ ଲକ୍ଷ ଟଙ୍କା କିମ୍ବା ଚାରି ଏକର ଅଣଜସେଚିତ ଜମି ବା ସେ ବାବଦରେ ଏକର ପିଛ ଏକ ଲକ୍ଷ ଟଙ୍କା ହିସାବରେ ଆର୍ଥିକ ସହାୟତା ଦିଆଯିବ ।

ବିସ୍ଥାପିତ ହେବାର ପାଞ୍ଚ ବର୍ଷ ମଧ୍ୟରେ, ଉପରୋକ୍ତ ଜମିର ରେଜିଷ୍ଟ୍ରେସନ ଖର୍ଚ୍ଚ ପ୍ରକଳ୍ପ କର୍ତ୍ତୃପକ୍ଷ ବହନ କରିବେ ।

ସହରାଞ୍ଚଳ, ରାସ୍ତା, ପାଇପ୍ ଲାଇନ୍ ଆଦି ପ୍ରକଳ୍ପରେ, ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କୁ ଗ୍ରାମାଞ୍ଚଳରେ ଦଶ ଡେସିମିଲ (ଅଢ଼େଇଗୁଣ୍ଠ) ଘରଡିହ କିମ୍ବା ସହରାଞ୍ଚରେ ଚାରି ଡେସିମିଲ (ଏକ ଗୁଣ୍ଠ) ଘରଡିହ ଜମି କିମ୍ବା ପଚାଶ ହଜାର ଟଙ୍କା ଯୋଗାଇ ଦିଆଯିବ । ପ୍ରକଳ୍ପ ଯୋଗୁଁ ଯଦି କୌଣସି ପରିବାର ସମ୍ପୂର୍ଣ୍ଣ ରୂପେ ବିସ୍ଥାପିତ ହୁଅନ୍ତି, ସେହି ପରିବାରର ମନୋନୀତ ଜଣେ ବ୍ୟକ୍ତିଙ୍କୁ ନିଯୁକ୍ତି କିମ୍ବା ତା' ବଦଳରେ ଆର୍ଥିକ ସହାୟତା ଦିଆଯିବ ।

ପ୍ରକଳ୍ପ ଯୋଗୁଁ ବିସ୍ଥାପିତ ପ୍ରତ୍ୟେକ ପରିବାରକୁ ବିସ୍ଥାପିତ ହେବା ଦିନଠାରୁ ବାର ମାସ ପର୍ଯ୍ୟନ୍ତ ମାସକୁ ଦୁଇ ହଜାର ଟଙ୍କା, ଅସ୍ଥାୟୀ ବାସଗୃହ ପାଇଁ ଦଶ ହଜାର ଟଙ୍କା ଏବଂ ନୂତନ ବସତିକୁ ଯିବା ପାଇଁ ଦୁଇହଜାର ଟଙ୍କା ଦିଆଯିବ ।

ବିସ୍ଥାପିତ ତଫସିଲଭୁକ୍ତ ଜନଜାତିର ପରିବାରଙ୍କୁ ଯଦି ଅନ୍ୟ ଜିଲ୍ଲାରେ ଥଇଥାନ କରାଯାଏ, ତେବେ ସେଥିପାଇଁ ପ୍ରତ୍ୟେକ ପରିବାରଙ୍କୁ ଶତକଡା ପଚିଶଭାଗ ଅଧିକ ଆର୍ଥିକ ସହାୟତା ଯୋଗାଇ ଦିଆଯିବ ।

ପ୍ରକଳ୍ପ କର୍ତ୍ତୃପକ୍ଷ ଥଇଥାନ ସ୍ଥାନରେ ନିର୍ଦ୍ଧାରିତ ସୁବିଧା ଯୋଗାଇଦେବେ ଏବଂ ଆବଶ୍ୟକସ୍ଥଳେ ନୂତନ ବସତିକୁ ରାଜସ୍ୱ ଗ୍ରାମ ରୂପେ ଘୋଷଣା କରିବେ ।

ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଏକ ରାଜ୍ୟସ୍ତରୀୟ ପରିଷଦ ଗଠିତ ହୋଇଛି । ଲୋକ ପ୍ରତିନିଧି, ବିଶେଷଜ୍ଞ, ପ୍ରଶାସକ ତଥା ସାମାଜିକ କର୍ମୀମାନେ ଏହି ପରିଷଦର ସଦସ୍ୟ ଅଛନ୍ତି ।

**ପୋସ୍କୋ ପ୍ରକଳ୍ପ ପାଇଁ ଅତିରିକ୍ତ ସୁବିଧା:-**

ଏତଦ୍‌ବ୍ୟତୀତ ଜଗତ୍‌ସିଂହପୁର ଜିଲ୍ଲାରେ ସ୍ଥାପିତ ହେବାକୁ ଯାଉଥିବା ପ୍ରକଳ୍ପ ଦ୍ୱାରା ପ୍ରଭାବିତ ପରିବାରଙ୍କ ପାଇଁ ନିମ୍ନୋକ୍ତ ସାହାଯ୍ୟ ପ୍ରଦାନ କରାଯିବ ।

ଯେଉଁ ପରିବାର ସରକାରୀ ଜମିରେ ପାନବରଜ କରି ଜୀବିକା ନିର୍ବାହ କରୁଛନ୍ତି, ସେମାନଙ୍କୁ ସେହି ଜମି ବାବଦରେ ଡିସିମିଲ୍ ପ୍ରତି ଛଅ ହଜାର ଟଙ୍କା ହିସାବରେ ଅନୁକମ୍ପାମୂଳକ ସାହାଯ୍ୟ ପ୍ରଦାନ କରାଯିବ । ଏହି ସାହାଯ୍ୟ ପରିମାଣ ପରିବାର ପିଛା ସର୍ବନିମ୍ନ ଦଶ ହଜାର ଟଙ୍କା ଓ ସର୍ବୋଚ୍ଚ ଷାଠିଏ ହଜାର ଟଙ୍କା ଧାର୍ଯ୍ୟ କରାଯାଇଅଛି ।

ଜମି ଅଧିଗ୍ରହଣ ନିୟମର ଧାରା ୪(୧) ରେ ବର୍ତ୍ତମାନ ଠାରୁ ଯେଉଁ ଭୂଅର୍ଜନ କାର୍ଯ୍ୟ ଆରମ୍ଭ କରାଯିବ, ଉପରୋକ୍ତ ସୁବିଧା ସେହି ପ୍ରକଳ୍ପ ପାଇଁ ଲାଗୁ ହେବ ।

## (ଖ) କଳିଙ୍ଗ ନଗର ଶିଳ୍ପ ପ୍ରକଳ୍ପ ଦ୍ୱାରା ବିସ୍ଥାପିତ ପରିବାରଙ୍କ ପାଇଁ ବିଶେଷ ସାହାଯ୍ୟ ବ୍ୟବସ୍ଥା :-

ଯାଜପୁର ଜିଲ୍ଲା କଳିଙ୍ଗ ନଗର ଶିଳ୍ପାଞ୍ଚଳ ନିମନ୍ତେ ଯେଉଁ ପରିବାରମାନେ ବିସ୍ଥାପିତ ହୋଇଛନ୍ତି ସେମାନଙ୍କ ପାଇଁ ରାଜ୍ୟ ସରକାର ଏକ ସ୍ୱତନ୍ତ୍ର ପ୍ୟାକେଜ୍ ଘୋଷଣା କରିଛନ୍ତି ।

**ପୁନର୍ବାସ ନିମନ୍ତେ ପରିବାରର ସଂଜ୍ଞା:-**

୧. ସ୍ୱାମୀ ଓ ସ୍ତ୍ରୀ ତଥା ସେମାନଙ୍କର ଅବିବାହିତ ସନ୍ତାନ । ସାବାଳକ ପୁତ୍ରମାନେ ସ୍ୱତନ୍ତ୍ର ପରିବାର ରୂପେ ବିବେଚିତ ହେବେ ।

୨. ୩୦ ବା ତଦୂର୍ଦ୍ଧ ବୟସର ଅବିବାହିତା କନ୍ୟା ପୁନର୍ବାସ ସହାୟତା ନିମନ୍ତେ ସ୍ୱତନ୍ତ୍ର ପରିବାର ରୂପେ ବିବେଚିତ ହେବେ ।

୩. ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କୁ ଯାଜପୁର ଜିଲ୍ଲାପାଳ ଏକ ପରିଚୟ ପତ୍ର ଦେବେ । ଏଥିରେ ଜିଲ୍ଲାପାଳ ଏବଂ ପରିବାରର ମୁଖ୍ୟ ଉଭୟଙ୍କ ଦସ୍ତଖତ ରହିବ ।

**ବିସ୍ତାପିତ ପରିବାରମାନଙ୍କ ସଂଖ୍ୟା ନିରୂପଣ:-**

ବିସ୍ଥାପିତ ପରିବାରମାନଙ୍କ ସଂଖ୍ୟା ନିରୂପଣ ନିମନ୍ତେ ଇସ୍ପାତ ପ୍ରକଳ୍ପ, ଇଡ୍କୋ ତଥା ରାଜ୍ୟ ସରକାରଙ୍କ ପ୍ରତିନିଧିମାନଙ୍କୁ ନେଇ ଏକ କମିଟି ଗଠିତ ହେବ । ଜିଲ୍ଲାପାଳ ଅଥବା ତାଙ୍କ ପ୍ରତିନିଧି ଏଥିରେ ରାଜ୍ୟ ସରକାରଙ୍କ ପ୍ରତିନିଧିତ୍ୱ କରିବେ । ଏହି କମିଟି ଯୁଗ୍ମ ତଦନ୍ତ କରି ପଥ ପ୍ରଦର୍ଶକ ନୀତିର ଚତୁର୍ଥ ପରିଚ୍ଛେଦରେ ଥିବା ଯୋଗ୍ୟତା ମାପ କାଠି ଅନୁସାରେ ବିସ୍ଥାପିତ ପରିବାରର ସଂଖ୍ୟା ନିରୂପଣ କରିବେ । ଏହି ସଂଖ୍ୟା ନିରୂପଣ ନିମନ୍ତେ ୧.୧.୨୦୦୫ତାରିଖ ରୂପେ ବିବେଚିତ

**ବିସ୍ଥାପିତ ପରିବାର ନିରୂପଣ ନିମନ୍ତେ ଯୋଗ୍ୟତା ପରିମାପକ :-**

ନିମ୍ନଲିଖିତ ସର୍ତ୍ତାବଳୀ ପୂରଣ କରୁଥିବା ପରିବାର ବିସ୍ଥାପିତ ପରିବାର ରୂପେ ପରିଗଣିତ ହେବେ ଏବଂ ପୁନର୍ବାସ ସହାୟତା ପାଇବା ନିମନ୍ତେ ଯୋଗ୍ୟ ବିବେଚିତ ହେବେ -

କ. ଯଦି ସଂପୃକ୍ତ ପରିବାରର ସମସ୍ତ ଜମି ଓ ଘର ଡିହ ଅଧିକୃତ ହୋଇଥାଏ ।

ଖ. ଯଦି ସଂପୃକ୍ତ ପରିବାରର ୧/୩ ଭାଗରୁ ଉର୍ଦ୍ଧ୍ୱ ଚାଷ ଜମି ତଥା ଘରବାରି ଜମି ଅଧିକୃତ ହୋଇଥାଏ ।

ଗ. ଯଦି ଉକ୍ତ ପରିବାରର କେବଳ ଘରବାରି ଜମି ଅଧିର୍କୃତ ହୋଇଥାଏ ।

**ନିଯୁକ୍ତି / ଆତ୍ମନିଯୁକ୍ତି ଯୋଗାଇବାର ପ୍ରକ୍ରିୟା :-**

କ. ପ୍ରକଳ୍ପରେ ନିଯୁକ୍ତି / ଆତ୍ମନିଯୁକ୍ତି ନିମନ୍ତେ ଓଡ଼ିଶାର ସ୍ଥାୟୀ ବାସିନ୍ଦାମାନଙ୍କୁ ପ୍ରାଥମିକତା ଦିଆଯିବ । କଳିଙ୍ଗନଗରରେ ଶିଳ୍ପ ପ୍ରତିଷ୍ଠା କରୁଥିବା ସଂସ୍ଥାମାନେ ପ୍ରତ୍ୟେକ ବିସ୍ଥାପିତ ପରିବାର ଜଣେ ମନୋନୀତ ସଦସ୍ୟଙ୍କୁ ତାଙ୍କ ପ୍ରକଳ୍ପ ଅଥବା ପ୍ରକଳ୍ପ ସହାୟକ ସଂସ୍ଥାମାନଙ୍କରେ ନିଯୁକ୍ତି କ୍ଷେତ୍ରରେ ପ୍ରାଥମିକତା ଦେବେ । ଏହି ନିଯୁକ୍ତି ପ୍ରାଥମିକତା ନିମ୍ନ କ୍ରମରେ ଦିଆଯିବ -

୧. ଯେଉଁ ବିସ୍ଥାପିତ ପରିବାରଙ୍କ ସମସ୍ତ ଚାଷ ଜମି, ଘରବାରି ଜମି ସହ ଅଧିକୃତ ହୋଇଛି ।

୨. ଯେଉଁ ପରିବାରର ୨/୩ ଭାଗ ଚାଷ ଜମି ଓ ଘରବାରି ଜମି ଅଧିକୃତ ହୋଇଛି ।

୩. ଯେଉଁ ପରିମାରର ୧/୩ ଭାଗ ଚାଷ ଜମି ତଥା ଘରବାରି ଜମି ଅଧିକୃତ ହୋଇଛି ।

ଖ. ଯେଉଁ ବିସ୍ଥାପିତ ପରିବାରର ମନୋନୀତ ସଦସ୍ୟମାନଙ୍କୁ ଉପରୋକ୍ତ ମତେ ଚାକିରୀ ଦିଆଯାଇନାହିଁ, ପ୍ରକଳ୍ପ ତରଫରୁ ସେମାନଙ୍କୁ ଦୋକାନ ଘର, ସେବାକେନ୍ଦ୍ର ଆଦି ଯୋଗାଇ ଦିଆଯାଇ ସେମାନଙ୍କ ଆତ୍ମନିଯୁକ୍ତି ନିମନ୍ତେ ସାହାଯ୍ୟ କରାଯିବ ।

ଗ. ବିସ୍ଥାପିତ ପରିବାରର ମନୋନୀତ ସଦସ୍ୟମାନଙ୍କୁ ନିଯୁକ୍ତି ନିମନ୍ତେ ଆବଶ୍ୟକୀୟ କାରିଗରି ଜ୍ଞାନ କୌଶଳ ଅର୍ଜନ ନିମନ୍ତେ ପ୍ରକଳ୍ପ ତରଫରୁ ତାଲିମ ଯୋଗାଇ ଦିଆଯିବାର ବ୍ୟବସ୍ଥା କରାଯିବ ।

**ନିଯୁକ୍ତି/ଆତ୍ମନିଯୁକ୍ତି ପରିବର୍ତ୍ତେ ଏକକାଳୀନ ଆର୍ଥିକ ସାହାଯ୍ୟ ପ୍ରଦାନର ପ୍ରକ୍ରିୟା :-**

୧. ଯଦି କୌଣସି ପରିବାର ଉପରୋକ୍ତ ଅନୁଛେଦ ୪(କ) ଅଥବା (ଖ) ବର୍ଣ୍ଣିତ ପଦ୍ଧତି ଅନୁସାରେ ନିଯୁକ୍ତି ଅଥବା ଆତ୍ମନିଯୁକ୍ତି ଦେବା ପାଇଁ ରାଜି ନୁହଁନ୍ତି, ତେବେ ପ୍ରକଳ୍ପ ତରଫରୁ ନିଯୁକ୍ତି / ଆତ୍ମନିଯୁକ୍ତି ପରିବେର୍ତ୍ତ ସେମାନଙ୍କୁ ଏକକାଳୀନ ଆର୍ଥିକ ସହାୟତା ଯୋଗାଇ ଦିଆଯିବ । ଏହି ଆର୍ଥିକ ସହାୟତ ସେମାନଙ୍କୁ ନିମ୍ନମତେ ଯୋଗାଇ ଦିଆଯିବ -

କ. ଯେଉଁ ବିସ୍ଥାପିତ ପରିବାରମାନଙ୍କ ୨/୩ଭାଗ ଚାଷ ଜମି ଏବଂ ସମସ୍ତ ଘରବାରି ଜମି ଅଧିକୃତ ହୋଇଛି ସେମାନେ ପରିବାର ପିଛା ୨ଲକ୍ଷ ଟଙ୍କା ପାଇବେ ।

ଖ.  ଯେଉଁ ବିସ୍ଥାପିତ ପରିବାରମାନଙ୍କୁ ୧/୩ଭାଗ ମାତ୍ର ୨/୩ଭାଗରୁ କମ୍ ଚାଷ ଜମି ଏବଂ ସମସ୍ତ ଘରବାରି ଜମି ଅଧିକୃତ ହୋଇଛି, ସେମାନେ ପରିବାର ପିଛା ୧ଲକ୍ଷ ଟଙ୍କା ପାଇବେ ।

ଗ.  ଅନ୍ୟ ସମସ୍ତ ବିସ୍ଥାପିତ ପରିବାର ୫୦ ହଜାର ଟଙ୍କା ଲେଖାଏଁ ପାଇବେ ।

**ବିସ୍ଥାପିତ ପରିବାରମାନଙ୍କ ପାଇଁ ଘରବାରି ଜମି :-**

ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କୁ ୧/୧୦ ଏକର ଘରବାରି ଜମି ପୁନର୍ବାସ ବସତିରେ ବିନା ମୂଲ୍ୟରେ ସମସ୍ତ ଭିତ୍ତି ଭୂମି ସୁବିଧା ସହ ଯୋଗାଇ ଦିଆଯିବ । ଅନ୍ୟଥାଶ ଘର ଡ଼ିହ ବାବଦରେ ପଚାଶ ହଜାର ଟଙ୍କା ପ୍ରଦାନ କରାଯିବ ।

**ପୁନର୍ବାସ ବସତି :-**

ରାସ୍ତା, ଗୋଷ୍ଠି କେନ୍ଦ୍ର, ବିଦ୍ୟାଳୟ ଗୃହ, ଜଳ ଯୋଗାଣ ସୁବିଧା, ବିଦ୍ୟୁତ ସୁବିଧା, ସ୍ୱାସ୍ଥ୍ୟ କେନ୍ଦ୍ର ଏବଂ ଆଦର୍ଶ ବସତି ଯୋଗ୍ୟ ଅନ୍ୟାନ୍ୟ ଭିତ୍ତି ଭୂମି ସୁବିଧାମାନ ପୁନର୍ବାସ ବସତିରେ ଯୋଗାଇ ଦିଆଯିବ ।

ଅନୁକମ୍ପାମୂଳକ ସାହାଯ୍ୟ ରାଶି ୨୫ହଜାର ଟଙ୍କାରୁ ୫୦ହଜାର ଟଙ୍କାକୁ ବୃଦ୍ଧି କରାଯାଇଛି । ଜମି ବାବଦକୁ କ୍ଷତି ପୂରଣ ଓ ଅନୁକମ୍ପାମୂଳକ ସହାୟତା, ପୂର୍ବରୁ ପାଇଥିବା ଅନୁକମ୍ପାମୂଳକ ସହାୟତା ତଥା ବର୍ଦ୍ଧିତ ସାହାଯ୍ୟ ଏ ସମସ୍ତକୁ ମିଶାଇ ଅତି କମ୍‌ରେ ଏକ ଲକ୍ଷ ଟଙ୍କା ମିଳିବା ବ୍ୟବସ୍ଥା ରଖାଯାଇଛି ।

**ଅସ୍ଥାୟୀ ବାସସ୍ଥାନ ନିମନ୍ତେ ସାହାଯ୍ୟ :-**

ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କୁ ଅସ୍ଥାୟୀ ବାସସ୍ଥାନ ନିର୍ମାଣ ନିମନ୍ତେ ପାଞ୍ଚ ହଜାର ଟଙ୍କା ପ୍ରଦାନ କରାଯିବ।

**ବିସ୍ଥାପିତ ପରିବାରଙ୍କୁ ଗୃହ ନିର୍ମାଣ ସହାୟତା:-**

ବିସ୍ଥାପିତ ପରିବାରଙ୍କୁ ଗୃହ ନିର୍ମାଣ ସହାୟତା ବାବଦରେ ଦେଢ଼ଲକ୍ଷ ଟଙ୍କା ପ୍ରଦାନ କରାଯିବ ।

ଯୋଗ୍ୟ ବିବେଚିତ ଜବରଦଖଲକାରୀଙ୍କ ପାଇଁ କେତେକ ସୁବିଧା ଘୋଷଣା କରାଯାଇଛି ।

ଏହି ସମସ୍ତ ସୁବିଧା ନୀଳାଚଳ ଇସ୍ପାତ ନିଗମ, ମେସ୍କୋ, ଟିସ୍କୋ ସମେତ କଳିଙ୍ଗନଗର ସ୍ଥିତ ସମସ୍ତ ପ୍ରକଳ୍ପ ପାଇଁ ଲାଗୁ ହେବ ।

କଳିଙ୍ଗନଗର ଆନ୍ଦୋଳନକାରୀମାନେ ସରକାରଙ୍କର ଏହି ପ୍ରସ୍ତାବକୁ ଗ୍ରହଣ କରିନାହାନ୍ତି ଓ ଜାନୁଆରୀ ୨,୩୦୦୬ତାରିଖ ସନ୍ଧ୍ୟା ଠାରୁ ଜାତୀୟ ରାଜ୍ୟପଥ-୨୦୦ ଅବରୋଧ ଜାରି ରହିଛି । କଳିଙ୍ଗନଗର ଆନ୍ଦୋଳନକାରୀ କେତେକ ମୌଳିକ

ଦାବୀ କରିଛନ୍ତି । ଏହି ଦାବୀ ବିସ୍ଥାପିତ ହେଉଥିବା ପ୍ରତ୍ୟେକ ନାଗରିକର ଏହା ହେଉଛି ପ୍ରଥମ ଅଧିକାର ।

(୧) କଳିଙ୍ଗନର ଅଞ୍ଚଳରେ ସରକାରଙ୍କ ତରଫରୁ ସମସ୍ତ ଜମି ଅଧିଗ୍ରହଣ କାମ ତଥା ଜୋର ଜବରଦସ୍ତ ଜମି ଖରିଦ୍ ବନ୍ଦ ହେଉ ।

(୨) ସରକାରଙ୍କର ତରଫରୁ ଅଧିଗ୍ରହଣ ହୋଇଥିବା ସମସ୍ତ ଜମି ଉପରେ ସରକାରର ମାଲିକାନାକୁ ରଦ୍ଦ କରି ତାହା ଲୋକଙ୍କର ବୋଲି ଘୋଷଣା କରାଯାଉ ।

(୩) ଜୋର ଜବରଦସ୍ତ ତଥା ବେଆଇନ ଭାବେ ହୋଇଥିବା ଜମି ଖରିଦ୍‌କୁ ରଦ୍ଦକରି ଚାଷୀଙ୍କୁ ତାଙ୍କ ଜମି ଫେରାଇ ଦିଆଯାଉ ।

(୪) ଯେଉଁମାନଙ୍କର ଚାଷଜମିର ପଟ୍ଟା ନାହିଁ, ତାହା ତୁରନ୍ତ ସରକାର ଯୋଗାଇ ଦିଅନ୍ତୁ ।

(୫) ସେହି ଅଞ୍ଚଳର ସଂରକ୍ଷଣ, ଝରଣା, ନାଳ ତଥା ପୋଖରୀ ଗୁଡିକର ଉପଯୁକ୍ତ ଉନ୍ନତି କରି ସେ ଗୁଡିକର ସଂରକ୍ଷଣ ଓ ଅନ୍ୟାନ୍ୟ ଏପରି କାର୍ଯ୍ୟ କରାଯାଉ, ଯାହାଦ୍ୱାରା ଅଞ୍ଚଳର ଲୋକେ ସୁରକ୍ଷିତ ଜୀବିକା ପାଇବେ ।

କଳିଙ୍ଗନଗର ଅଞ୍ଚଳରେ ନୀଳାଚଳ, ମେସ୍କୋ, ଭିସା, ଜିନ୍ଦଲ, ଜେ.ଜେ.ଏଲ ରୋହିତ, ମେସ୍କୋ-ଯଖପୁରା, ମହାରାଷ୍ଟ୍ର-ସିମ୍‌ଲେସ ଇତ୍ୟାଦି ପାଇଁ ସରକାର ଜମି ଅଧିଗ୍ରହଣ କରିଛନ୍ତି । ଅଧିଗ୍ରହଣ ପୂର୍ବରୁ ବା ପରେ ସେଠାକାର ଏହି ପ୍ରଥମ ଅଧିକାର ଅମୀମାଂଶିତ ହୋଇ ରହି ଆସିଆଛି ଏବଂ ତାହା ହିଁ ବ୍ୟାପକ ଜନଆନ୍ଦୋଳନ ଓ ପୁଞ୍ଜିଭୂତ ଅସନ୍ତୋଷର ରୂପ ନେଇଛି ।

ସରକାର ଯେଉଁ ପୁନର୍ବାସ ଓ ଥଇଥାନ ନୀତି'୨୦୦୬ ଗ୍ରହଣ କରିଛନ୍ତ, ସେଥିରେ ମଧ୍ୟ ଏହି ମୌଳିକ ପ୍ରଶ୍ନ ଗୁଡ଼ିକର କୌଣସି ସିଦ୍ଧାନ୍ତ ଦିଆଯାଇନାହିଁ । ପୁନର୍ବାସ ଓ ଥଇଥାନ ପାଇଁ କ୍ଷତି ପୂରଣ କଥା କୁହାଯାଇଛି କିନ୍ତୁ ଶିଳ୍ପ ଯେଉଁଠି ହେବ ସେଠାକାର ଲୋକେ ଏହା ଚାହୁଁଛନ୍ତି କି ନାହିଁ ସେ ସମ୍ପର୍କରେ ନୀତିରେ ସ୍ପଷ୍ଟ କୌଣସି ଉଲ୍ଲେଖ ନାହିଁ । ନୂତନ ନୀତିରେ ଶିଳ୍ପାୟନ ହେବା ଆବଶ୍ୟକ ଓ ତଦ୍‌ଜନିତ ପୁନର୍ବାସ ଓ ଥଇଥାନ ସମ୍ପର୍କରେ ସରକାର ଯେଉଁ ମତ ପ୍ରକାଶ କରିଛନ୍ତି, ତାହା ଲୋକମାନଙ୍କୁ ଭୁଆଁବୁଲାଇବା ପାଇଁ ଏକ ଶକ୍ତ ଚାଲ ।

ଏ ସମ୍ପର୍କରେ ବ୍ୟାପକ ବିତର୍କ ହେବା ଆବଶ୍ୟକ । କାରଣ କାଶୀପୁର ଠାରୁ କଳିଙ୍ଗନଗର, ଗନ୍ଧମାର୍ଦ୍ଦନ ଠାରୁ ପୋସ୍କୋ ପର୍ଯ୍ୟନ୍ତ ଜନଆନ୍ଦୋଳନ ଯେଉଁ ରୂପ ନେଇଛି ଓ ନେଉଛି, ତାହା ବହୁଜାତିକ କମ୍ପାନୀ ଦ୍ୱାରା ପ୍ରାକୃତିକ ସମ୍ପଦର ଲୁଟ ବିରୁଦ୍ଧରେ

ଉଦ୍ଦିଷ୍ଟ । ଏବର ଅର୍ଥନୈତିକ ପ୍ରକ୍ରିୟା ଭିତରେ ଯେଉଁ ଭଳି ଅଳ୍ପ ଲୋକଙ୍କ ସୁବିଧା ପାଇଁ ବେଶୀଲୋକଙ୍କୁ ବଳି ପଡ଼ିବା ପାଇଁ ବାଧ କରାଯାଉଛି, ସେହି ଅର୍ଥନୈତିକ ବ୍ୟବସ୍ଥା ବିରୁଦ୍ଧରେ ଏହିସବୁ ଆନ୍ଦୋଳନ ଉଦ୍ଦିଷ୍ଟ । ପିଢି ପିଢି ଧରି ଜମି ଉପରେ ନିର୍ଭର କରି ଚଳି ଆସୁଥିବା ପରିବାରକୁ କ୍ଷତିପୂରଣ ଆଳରେ କିଛି ହଜାର ଟଙ୍କା, ଜମି ଓ ଗୃହ ହରାଇଥିବା ଲୋକଙ୍କୁ ପରିବାର ପିଛା ଜଣକୁ ଚାକିରୀର ଆଶ୍ୱାସନା କ'ଣ ଉପଯୁକ୍ତ କ୍ଷତିପୂରଣ ହୋଇ ପାରେ କି ? ଯେତେବେଳେ ସମସ୍ତ ଅଞ୍ଚଳ ବିଭିନ୍ନ ବହୁ ରାଷ୍ଟ୍ରୀୟ କମ୍ପାନୀ ହାତକୁ ଚାଲିଯିବାକୁ ବସିଛିସେତେବେଳେ ଜମି ବଦଳରେ ଜମି ବା ମିଳିବ କେଉଁଠୁ ?

ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ମଣିଷର ସର୍ବନିମ୍ନ ଆବଶ୍ୟକତାକୁ ପୂରଣ କରିବା ପାଇଁ ଯଦି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଉପରେ ନିର୍ଭର କରିବାକୁ ହୁଏ, ତେବେ ତାହାକୁ ବିକାଶ କୁହାଯିବ କି ?

## ଶିଳ୍ପାୟନ ପ୍ରଚ୍ଛଦରେ ଥିବା ରାଜନୈତିକ ଦର୍ଶନ:-

ଜଗତିକରଣ ପ୍ରକ୍ରିୟାର ଆରମ୍ଭ ନବେ ଦଶକ ପୂର୍ବରୁ ହୋଇଥିଲେ ହେଁ ସାମ୍ରାଜ୍ୟବାଦ ଅଣ-ସାମରିକ ପ୍ରକ୍ରିୟାରେ ନିଜର ଆର୍ଥିକ ଶକ୍ତିର ବିକାଶ ପାଇଁ ବିଭିନ୍ନ ନୀତି ଓ କାର୍ଯ୍ୟକ୍ରମ ମାଧ୍ୟମରେ ଖୁବ୍ ଶୀଘ୍ର ଫଳ ପାଇବା ପାଇଁ ଚେଷ୍ଟା କରୁଥିବା ହେତୁ ଜଗତିକରଣର ରୂପ ଦେଖାଦେଇଛି । ଯାହା ଫଳରେ ରାଷ୍ଟ୍ରର ଭୂମିକା ଗୌଣ ହୋଇଛି ଓ ତା'ର ସ୍ଥାନ ନେଇଛନ୍ତି ବହୁଜାତିକ ଓ ବହୁରାଷ୍ଟ୍ରୀୟ ପୁଞ୍ଜିପତିମାନେ । ପୁଞ୍ଜି ବିନିଯୋଗ ଆଳରେ ସେମାନେ ଶୋଷଣର ଦ୍ୱାର ଉନ୍ମୁକ୍ତ କରି ଯେଉଁଠି ପ୍ରାକୃତିକ ସମ୍ପଦ ରହିଛି, ବିଶେଷ କରି ଖଣିଜ ସମ୍ପଦ ରହିଛି, ସେଠି ନିଜର ଲୋଲୁପ ଦୃଷ୍ଟି ପକାଇଛନ୍ତି । ପୃଥିବୀର ସବୁଠାରୁ ପ୍ରାକୃତିକ ସମ୍ବଳରେ ଧନୀ ଆଫ୍ରିକାର ଦେଶମାନେ ଆଜି ସବୁଠାରୁ ଦରିଦ୍ର । ଏସିଆର ଫିଲିପାଇନ୍ସ ବର୍ମା ଇତ୍ୟାଦିରେ ଖଣିଜ ସମ୍ପଦ ଶୂନ୍ୟ ହୋଇଯିବା ପରେ ସେ ଦେଶଗୁଡିକ ଦରିଦ୍ର ହୋଇଯାଇଛନ୍ତି । ଯେଉଁଠି ପ୍ରାକୃତିକ ସମ୍ପଦ ରହିଛି, ତାହା ସହ ଜୀବିକାର ସ୍ରୋତ ଯୋଡି ହୋଇଛି । ତାହା ଶେଷ ହେଲେ ସେ ରାଷ୍ଟ୍ର ଦରିଦ୍ର ହୋଇଛି । ଚୀନରେ ଆମ ଦେଶ ଠାରୁ ୩ ଗୁଣ ଲୁହା ପଥର ରହିଛି । ତଥାପି ସେ ଆମ ଦେଶରୁ ଆମଦାନୀ କରୁଛି କାହିଁକି ? ଆମେରିକା ୧୦୦ବର୍ଷ ପାଇଁ ତା'ର ତେଲ ଭଣ୍ଡାରକୁ ସଂରକ୍ଷିତ ରଖି ଅନ୍ୟ ଦେଶ ଉପରେ ପ୍ରଭୁତ୍ୱ ବିସ୍ତାର କରି ତେଲ ବ୍ୟବସାୟକୁ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରୁଛି କାହିଁକି ?

ପ୍ରାକୃତିକ ସମ୍ପଦ ବିନିମୟରେ ଶିଳ୍ପାୟନ କରି ବିକାଶ କରିବାର ସଜ୍ଞା ଓ ପରିଭାଷା ଜନବିରୋଧୀ । ଏହି ବିକାଶକୁ ସାଧାରଣ ଲୋକମାନଙ୍କ ଉପରେ ଚାପି

ଦେବା ପାଇଁ ଯେଉଁ ଚେଷ୍ଟା ହେଉଛି, ତା ମୂଳରେ ରହିଛି ପୁଞ୍ଜିବାଦୀ ଦର୍ଶନ । ରାଷ୍ଟ୍ରର ଅଭିବୃଦ୍ଧି ପାଇଁ ଅର୍ଥନୈତିକ ଅଭିବୃଦ୍ଧିର ଆବଶ୍ୟକତା ରହିଛି କିନ୍ତୁ ଏହି ଅର୍ଥନୈତିକ ବିକାଶ କେବଳ ଶିଳ୍ପାୟନ ନୁହେଁ ! ଓଡ଼ିଶା କ୍ଷେତ୍ରରେ ଏହା କୃଷି ଓ ଗ୍ରାମ୍ୟ ଭିତ୍ତିକ ଅର୍ଥନୀତି ଏବଂ ଖଣିଜ ସମ୍ପଦର ସୁବିନିଯୋଗ ଦ୍ୱାରାହିଁ ବିକାଶ ହୋଇପାରିବ ।

ଓଡ଼ିଶାରେ ଯେଉଁ ଆନ୍ଦୋଳନ ଚାଲିଛି, ତାହା ବିସ୍ଥାପିତ ହେବାକୁ ଥିବା ବା ହେଉଥିବା ଲୋକମାନଙ୍କର ସ୍ୱତଃସ୍ଫୂର୍ତ୍ତ ଆନ୍ଦୋଳନ । ଏ ଆନ୍ଦୋଳନକୁ ପୁଞ୍ଜିବାଦୀ ବ୍ୟବସ୍ଥା ବିରୁଦ୍ଧରେ ସଶକ୍ତ କରିବାକୁ ହେଲେ ଏହାର ରାଜନୀତିକରଣ ସର୍ବାଦୌ ଅପରିହାର୍ଯ୍ୟ । ବିଶେଷ କରି ବାମପନ୍ଥୀ ଆନ୍ଦୋଳନ ବ୍ୟତୀତ ଏହାକୁ ସକରାତ୍ମକ ଭାବରେ ବିରୋଧ କରିବା ସମ୍ଭବ ହେବ ନାହିଁ କିମ୍ବା ପ୍ରକୃତ ବିକାଶ ପାଇଁ ବାଟଟି ଖୋଲା ଯାଇପାରିବ ନାହିଁ ।



ମୂଲ୍ୟ:ଟ.୫/-

କ୍ୱାର୍ଟର ନଂ ଏମ୍‌ଆର୍‌-୧୫୬, ରୋଡ୍‌ ନଂ-୨, ୟୁନିଟ୍‌-୯, ଭୁବନେଶ୍ୱର-୭୫୧୦୨୨
ଫୋନ ନଂ-୦୬୭୪-୨୩୯୨୦୮୬